# କବି ବଂଶୀବଲ୍ଲଭ

## ଚରିତ ନାଟକ



ନାଟ୍ୟକାର
ଅନନ୍ତ ଚରଣ ଶୁକ୍ଳ




ପ୍ରକାଶିକା
ପ୍ରଫେସର ଇନ୍ଦୁଲତା ଶୁକ୍ଳ

କବି ବଂଶୀବଲ୍ଲଭ
(ଚରିତ ନାଟକ)
ନାଟ୍ୟକାର :
ଅନନ୍ତ ଚରଣ ଶୁକ୍ଳ
ପ୍ରକାଶିକା :
ଡକ୍ଟର ଇନ୍ଦୁଲତା ଶୁକ୍ଳ
ବରିଷ୍ଠ ପ୍ରଫେସର, ଗଣିତ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତି ବିହାର-୭୬୮୦୧୯
ତଥା
ଇନ୍ଦୁ ନିଳୟ
ଏ-୪୨, ହାଉସିଂ ବୋର୍ଡ କଲୋନୀ
ସେକ୍ଟର-୭, ମର୍କତ ନଗର
କଟକ-୧୪
ପ୍ରଥମ ସଂସ୍କରଣ :
ମକର ସଂକ୍ରାନ୍ତି : ୨୦୦୪
ଡି.ଟି.ପି :
ଲୋକନାଥ ଦୋରା
ପ୍ରିଣ୍ଟ୍ ମିଡିଆ, ବୁର୍ଲା
ପ୍ରଚ୍ଛଦ ପଟ୍ଟ :
ସଂଜୟ କୁମାର ଷଡଙ୍ଗୀ
ମୂଲ୍ୟ - ଟ ୫୧.୦୦

**KABI BANSHIBALLABHA**
(Charita Nataka)
**Play wright :**
Ananta Ch. Sukla
**Publisher :**
Dr. Indulata Sukla
Sr. Professor, Dept. of Mathamatics
Sambalpur University
Jyoti Vihar-768019
&
Indu Nilaya
A-42,
Housing Board Colony, Sector-7,
Markata Nagar,
Cuttack-14
**First Edition:**
Makara Sankranti:2004
**D.T.P.**
Lokanath Dora
PRINT MEDIA
Burla
**Cover Page Design:**
Sanjay Ku. Sarangi

**Price:**
Rs. 51.00

# ପ୍ରସ୍ତାବନା

ଏ ନାଟକ ଲେଖା ହୋଇଥିଲା ୧୯୬୦ ମସିହାରେ ଏବଂ ସେହି ବର୍ଷ ଜୁନ୍ ମାସରେ ଏହାର ପ୍ରଥମ ଅଭିନୟ ହୋଇଥିଲା ଗରଦପୁରର ଭାଗୀରଥି ପାଠାଗାର ଆନୁକୂଲ୍ୟରେ । ପ୍ରଥମ ରଜନୀର ଅଭିନେତା ଏବଂ ପରିଚାଳକମାନଙ୍କ ମଧ୍ୟରୁ ଅନେକ ଆଜି ଦିବଂଗତ । ନାଟକଟିର ପାଣ୍ଡୁଲିପିଟି ଅକ୍ଷୁଣ୍ଣଭାବରେ ମୋ ପାଖରେ ରହିଥିଲା ଗତ ୪୩ ବର୍ଷ ଧରି । ୨୦୦୩ ମସିହାର ଏପ୍ରିଲ୍ ମାସରେ ଗରଦପୁରର ବଂଶୀବଲ୍ଲଭ ସାହିତ୍ୟ ସଂସଦର ବାର୍ଷିକୋତ୍ସବ ଦିନ ଦେବ ମହାପାତ୍ରଙ୍କ ସଂପାଦିତ "ମୋଗଲ ତମାସା" ବା "ଚୈତ ତାମ୍‌ସା"ର ଏକ ସଂସ୍କରଣ ଉନ୍ମୋଚିତ ହେଲା ଭଦ୍ରକର କଲେକ୍ଟରଙ୍କ ଦ୍ୱାରା । ସେହି ସଭାରେ ମୁଁ ଉପସ୍ଥିତ ଥିଲି । ଦାବି ହେଲା, ମୋର ଲିଖିତ ଏହି ନାଟକଟି ପ୍ରକାଶିତ ହେଉ । ମୁଁ ସମ୍ମତ ହେଲି । ମୋର ପତ୍ନୀ ସମ୍ବଲପୁର ବିଶ୍ୱବିଦ୍ୟାଳୟର ବରିଷ୍ଠ ଗଣିତ ପ୍ରଫେସର ତଥା ଉତ୍ତର ଓଡ଼ିଶାର ବିଶିଷ୍ଟ ଗାଣିତିକା ଡକ୍ଟର ଇନ୍ଦୁଲତା ଶୁକ୍ଳ ନାଟକଟିର ପ୍ରକାଶନର ସମସ୍ତ ବ୍ୟୟଭାର ଗ୍ରହଣ କଲେ । ଗରଦପୁରର ମୋର ବୟୋବୃଦ୍ଧ ଏବଂ ବରିଷ୍ଠ-କନିଷ୍ଠ ପ୍ରତିବାସୀମାନେ ବିଶେଷତଃ ଦେବ ପ୍ରସାଦ ମହାପାତ୍ର, ରାମ ପ୍ରସାଦ ମହାନ୍ତି, ନବକିଶୋର ମହାନ୍ତି, ଡକ୍ଟର ପ୍ରଭାତ କୁମାର ମହାନ୍ତି, ବୈଷ୍ଣବାନନ୍ଦ ମହାପାତ୍ର, ଭାବଗ୍ରାହୀ ମିଶ୍ର, ଶୈଳେନ୍ଦ୍ର ମହାପାତ୍ର, ଶିଶିର ମହାପାତ୍ର, କିରଣ ଗୁଇଁ, ମନୋରଂଜନ ମହାନ୍ତି ପ୍ରଭୃତି ମୋତେ ବାରମ୍ବାର ପ୍ରୋତ୍ସାହିତ କଲେ । ବୁର୍ଲାସ୍ଥିତ ପ୍ରିଣ୍ଟ୍ ମିଡିଆର କମ୍ପ୍ୟୁଟର ଚାଳକ ଲୋକନାଥ ଦୋରାଙ୍କୁ ମୁଁ ଏହାର ମୁଦ୍ରଣ ଭାର ଦେଲି । ମୋର ଛାତ୍ର ସଂଜୟ ଷଡ଼ଙ୍ଗୀ ପ୍ରୁଫ୍ ସଂଶୋଧନ କଲେ । ଶେଷରେ ନାଟକଟି ଲୋକଲୋଚନକୁ ଆସିଲା ।

କବି ବଂଶୀବଲ୍ଲଭ ଗୋସ୍ୱାମୀଙ୍କ ସଂପର୍କରେ ପର୍ଯ୍ୟାପ୍ତ ଐତିହାସିକ ତଥ୍ୟ ମିଳି ନାହିଁ । ତାଙ୍କର ଲିଖିତ ନାଟକଗୁଡ଼ିକ ମଧ୍ୟରୁ କେବଳ "ମୋଗଲ ତମାସା"ର ତିନୋଟି ସଂସ୍କରଣ ପ୍ରକାଶିତ ହୋଇଛି । ପ୍ରଥମେ ଡକ୍ଟର କୃଷ୍ଣଚରଣ ବେହେରା ଏହାର ପ୍ରକାଶ

କରିଥିଲେ ଓ କବିଙ୍କର ଜନ୍ମ ଖ୍ରୀ ୧୭୨୮ରେ ହୋଇଥିବାର ମତ ପ୍ରକାଶ କରିଥିଲେ । ଦ୍ୱିତୀୟ ସଂସ୍କରଣ ହେଇଛି ଭଦ୍ରକ ଅନ୍ତର୍ଗତ ମିର୍ଜାପୁରର ଡାକ୍ତର ଦ୍ୱିଜେନ୍ଦ୍ର ବେହେରାଙ୍କ ଦ୍ୱାରା ଓ ତୃତୀୟ ସଂସ୍କରଣ କରିଛନ୍ତି ଗରଦପୁରର ଦେବ ପ୍ରସାଦ ମହାପାତ୍ର । (ଏହି ସଂସ୍କରଣ ବ୍ୟତୀତ) ଚତୁର୍ଥ ସଂସ୍କରଣ (ଅନ୍ୟ କେତେକ ତମାସା ସହ) କରିଛନ୍ତି ଡକ୍ଟର କୃଷ୍ଣ ଚରଣ ବେହେରା ଓ ଡକ୍ଟର ମନୀନ୍ଦ୍ର କୁମାର ମହାନ୍ତି । ଏହି ସଂସ୍କରଣଗୁଡ଼ିକ ଯଥାକ୍ରମେ ସାହାପୁର, ମିର୍ଜାପୁର ଓ ଗରଦପୁର (୪ର୍ଥ ସଂସ୍କରଣ ପ୍ରଥମ ସଂସ୍କରଣର ପୁର୍ନମୁଦ୍ରଣ)ରେ ଅଭିନୀତ ହେଉଥିବା ପାଣ୍ଡୁଲିପିଗୁଡ଼ିକୁ ସମ୍ୱଳ କରିଛି । କବି ବଂଶୀବଲ୍ଲଭ ଓ ତାଙ୍କର ଲିଖିତ ତମାସା (ତାମ୍‌ସା)ଗୁଡ଼ିକ ଖୁବ୍ ସମ୍ଭବ ଓଡ଼ିଆ ସାହିତ୍ୟର ପ୍ରଥମ ନାଟ୍ୟ ଚରନା । ଏ ସଂପର୍କରେ ପର୍ଯ୍ୟାପ୍ତ ଅଧ୍ୟୟନ ପାଇଁ ଆବଶ୍ୟକ ଭଦ୍ରକର ଆଞ୍ଚଳିକ ଇତିହାସ—ପ୍ରଶାସନିକ, ଆର୍ଥନୀତିକ, ସାଂସ୍କୃତିକ ଓ ଭାଷାତାତ୍ତ୍ୱିକ । ଗରଦପୁରର ଅଧିବାସୀ ଶ୍ରୀମାନ୍ ପ୍ରଭାତ କୁମାର ମହାନ୍ତି ନିକଟରେ ଭଦ୍ରକର ଆଞ୍ଚଳିକ ଇତିହାସ (ଖ୍ରୀ: ୧୫୬୮-୧୯୪୭) ଉପରେ ଗବେଷଣା ପ୍ରବନ୍ଧ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ପାଇଛନ୍ତି । ଏଥିରୁ ଅନେକଗୁଡ଼ିଏ ତଥ୍ୟର ସନ୍ଧାନ ମିଳେ । କିନ୍ତୁ ମୁଁ ଯେତେବେଳେ ଏହି ନାଟକ ଲେଖିଥିଲି ସେତେବେଳେ ଏ ସବୁ ତଥ୍ୟର ସନ୍ଧାନ ପାଇ ନଥିଲି । ଗରଦପୁର, ସଂଗତ, ବାଙ୍କା ବଜାରର ବୟୋବୃଦ୍ଧ ବ୍ୟକ୍ତିମାନଙ୍କ ସହିତ ଆଲୋଚନା କରି ଏବଂ ଜନଶ୍ରୁତିକୁ ଆଧାର କରି ଏ ନାଟକ ଲେଖିଥିଲି । ଏଥିରେ ରମାବଲ୍ଲଭ, ବଂଶୀବଲ୍ଲଭ, ଗିରିଧାରୀଲାଲା, ଜଗବନ୍ଧୁ ଓ ସତ୍ୟବତୀଙ୍କୁ ଛାଡ଼ି ଦେଲେ ଅନ୍ୟସବୁ ଚରିତ୍ର କଳ୍ପିତ । ଓଡ଼ିଆ ନାଟ୍ୟ ସାହିତ୍ୟ ପରଂପରାରେ ଐତିହାସିକ ତଥା ଚରିତ ନାଟକଗୁଡ଼ିକରେ ଯେପରି ଇତିହାସ, ଜନଶ୍ରୁତି ଓ କଳ୍ପନାର ମିଶ୍ରଣ ହେଇଛି, ଉପସ୍ଥିତ ନାଟକରେ ମୁଁ ତାହା ଅବଲମ୍ବନ କରିଛି । କବିଙ୍କର ଜନ୍ମ ସଙ୍ଗତରେ କିମ୍ବା ସଛିଆରେ, ସେ ସଂପର୍କରେ କେତେକେ ବାଦାନୁବାଦ କରିଥା'ନ୍ତି । କିନ୍ତୁ ମୁଁ ଚାରୋଟି ଦଶନ୍ଧି ପୂର୍ବରୁ ଯେଉଁ ତଥ୍ୟ ସଂଗ୍ରହ କରିଥିଲି ସେଥିରୁ ସିଦ୍ଧ ହୋଇଥିଲା ଯେ ତାଙ୍କ ଜନ୍ମ ସଂଗତ ଗ୍ରାମରେ ଏବଂ ମାମୁଁ ଘର ସଛିଆ ଗ୍ରାମରେ । ତା'ର ଗୋଟାଏ ଆପାତସିଦ୍ଧ ପ୍ରମାଣ ହେଲା ମୋଗଲ ତମାସା । ପ୍ରଥମେ କବିଙ୍କ ଜୀବଦ୍ଦଶାରେ ସଂଗତର ପ୍ରାଚୀନ ମହାଦେବ ଶ୍ରୀ ଶ୍ରୀ ହଟନାଗରଜୀଉଙ୍କ ପ୍ରାଙ୍ଗଣରେ ଏହି ତମାସା ଅଭିନୀତ ହୋଇଥିଲା । ଏହି ମହାଦେବଙ୍କର ପ୍ରତିଷ୍ଠାନ ସପ୍ତଦଶ ଶତାବ୍ଦୀର ଶେଷଭାଗରେ ହୋଇଥିବାର ଅନୁମାନ କରାଯାଏ । ବଂଶାନୁକ୍ରମିକ ଭାବେ ଭଦ୍ରକର ବିଶିଷ୍ଟ "ବହଳୀ" ପଦବୀଧାରୀ ବ୍ରାହ୍ମଣ (ମୋର ମାମୁଁବଂଶ)ମାନେ ଏ ପର୍ଯ୍ୟନ୍ତ ଏହାର ପୂଜା କରି ଆସିଛନ୍ତି । ଉତ୍ତରାଧିକାର ସୂତ୍ରରେ ଶ୍ରୀ ହଟନାଗରଙ୍କ ବିଜେସ୍ଥଳୀ ଓ ତାଙ୍କ ସମ୍ମୁଖସ୍ଥ ଦୁଇଗୁଣ୍ଠ ଜମି ଭଦ୍ରକ ତହସିଲ ଦ୍ୱାରା ମୋର ନାମରେ ପଟ୍ଟା କରାଯାଇଛି । ଏ ଜମି ଦହଣାଶୁଣି ମୌଜାସ୍ଥିତ । ପ୍ରୋକ୍ତ ଦୁଇ ଗୁଣ୍ଠ ଜମିରେ ହୁଏତ ବଂଶୀବଲ୍ଲଭଙ୍କର ଗୃହସ୍ଥଳୀ ଥିଲା । ଏଣୁ ଏହି ଜମିରେ ମୁଁ ବଂଶୀବଲ୍ଲଭଙ୍କ ନାମରେ ଏକ ଉଦ୍ୟାନ ଓ ସ୍ମୃତିସ୍ତମ୍ଭ ଗଢ଼ିବାର ଯୋଜନା କରିଛି ।

ଦ୍ୱିତୀୟ ପ୍ରମାଣ ହେଲା କବି ବଂଶୀବଲ୍ଲଭ ସାଳନ୍ଦୀ ନଦୀ ଉତ୍ତରବାହିନୀ ହୋଇଥିବା ସ୍ଥାନରେ ପ୍ରତିଷ୍ଠିତ ଉତ୍ତରେଶ୍ୱର ମହାଦେବଙ୍କ ପୀଠରେ ସାଧନା କରିଥିବାର ଜନଶ୍ରୁତି ରହିଛି । ହିନ୍ଦୁ ପରମ୍ପରାରେ ନଦୀ ଉତ୍ତରବାହିନୀ ହେବାସ୍ଥଳ ଅତ୍ୟନ୍ତ ପବିତ୍ର ଓ ଆଧାତ୍ମିକ ପରିବେଶରେ ସମୃଦ୍ଧ । ଯେପରି କାଶୀର ପ୍ରସିଦ୍ଧି ନିର୍ଭର କରେ ସେଠାରେ ଗଙ୍ଗାନଦୀ ଉତ୍ତରବାହିନୀ ହୋଇଥିବା ଉପରେ । ଭଦ୍ରକର ଉତ୍ତରବାହିନୀରେ ଅଦ୍ୟାବଧି ମକର ସଂକ୍ରାନ୍ତି ଦିନ ସାଳନ୍ଦୀ ନଦୀରେ ସ୍ନାନ ଓ ଉତ୍ତରେଶ୍ୱର ଦର୍ଶନ ସହିତ ଏକ ବିରାଟ ମେଳା ବା ବାଲିଯାତ୍ରା ଅନୁଷ୍ଠିତ ହୋଇ ଆସୁଛି । ତା'ର ଇତିହାସ ଏ ପର୍ଯ୍ୟନ୍ତ ମିଳିନାହିଁ । ଉତ୍ତରବାହିନୀ ଓ ତା'ର ଆଖପାଖ ଗ୍ରାମଗୁଡ଼ିକରେ (ଯଥା ବାଲିପାଟଣା, ହାତୀସାହି, ତେମୁହାଣୀ) ପ୍ରତିଷ୍ଠିତ ବିରାଟ କୃଷକ ବସ୍ତି ସମୂହ ଦୁଇଟି କଥାର ସୂଚନା ଦିଏ — ନଦୀ କୂଳର ଉର୍ବର ଚାଷ ଜମି ଏବଂ ଓଡ଼ିଶାର ରାଜା ମୁକୁନ୍ଦଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ପାଇକ ସମୁଦାୟ । ପୁରୁଣା ବଜାର ବାବୁସାହି ନିବାସୀ ଯତୀନ୍ଦ୍ର କୁମାର ମହାପାତ୍ର ତାଙ୍କର "ବହ୍ନିକନ୍ୟା" ଉପନ୍ୟାସରେ ଉଲ୍ଲେଖ କରିଛନ୍ତି ପାଇକ ସମୁଦାୟ ସହିତ ବଙ୍ଗ ନବାବଙ୍କର ଯୁଦ୍ଧ, ଯେଉଁ ଯୁଦ୍ଧ ପରେ ପରେ ମୁକୁନ୍ଦଦେବଙ୍କ ଅବସାନ

କରିଥିଲେ ଓ କବିଙ୍କର ଜନ୍ମ ଖ୍ରୀ ୧୬୨୮ରେ ହୋଇଥିବାର ମତ ପ୍ରକାଶ କରିଥିଲେ । ଦ୍ୱିତୀୟ ସଂସ୍କରଣ ହୋଇଛି ଭଦ୍ରକ ଅନ୍ତର୍ଗତ ମିର୍ଜାପୁରର ଡାକ୍ତର ଦ୍ୱିଜେନ୍ଦ୍ର ବେହେରାଙ୍କ ଦ୍ୱାରା ଓ ତୃତୀୟ ସଂସ୍କରଣ କରିଛନ୍ତି ଗରଦପୁରର ଦେବ ପ୍ରସାଦ ମହାପାତ୍ର । (ଏହି ସଂସ୍କରଣ ବ୍ୟତୀତ) ଚତୁର୍ଥ ସଂସ୍କରଣ (ଅନ୍ୟ କେତେକ ତମାସା ସହ) କରିଛନ୍ତି ଡକ୍ଟର କୃଷ୍ଣ ଚରଣ ବେହେରା ଓ ଡକ୍ଟର ମନୀନ୍ଦ୍ର କୁମାର ମହାନ୍ତି । ଏହି ସଂସ୍କରଣଗୁଡ଼ିକ ଯଥାକ୍ରମେ ସାହାପୁର, ମିର୍ଜାପୁର ଓ ଗରଦପୁର (୪ର୍ଥ ସଂସ୍କରଣ ପ୍ରଥମ ସଂସ୍କରଣର ପୁର୍ନମୁଦ୍ରଣ)ରେ ଅଭିନୀତ ହେଉଥିବା ପାଣ୍ଡୁଲିପିଗୁଡ଼ିକୁ ସମ୍ବଳ କରିଛି । କବି ବଂଶୀବଲ୍ଲଭ ଓ ତାଙ୍କର ଲିଖିତ ତମାସା (ତାମ୍‌ସା)ଗୁଡ଼ିକ ଖୁବ୍ ସମ୍ଭବ ଓଡ଼ିଆ ସାହିତ୍ୟର ପ୍ରଥମ ନାଟ୍ୟ ଚରନା । ଏ ସଂପର୍କରେ ପର୍ଯ୍ୟାପ୍ତ ଅଧ୍ୟୟନ ପାଇଁ ଆବଶ୍ୟକ ଭଦ୍ରକର ଆଞ୍ଚଳିକ ଇତିହାସ—ପ୍ରଶାସନିକ, ଆର୍ଥନୀତିକ, ସାଂସ୍କୃତିକ ଓ ଭାଷାତାତ୍ତ୍ୱିକ । ଗରଦପୁରର ଅଧିବାସୀ ଶ୍ରୀମାନ୍ ପ୍ରଭାତ କୁମାର ମହାନ୍ତି ନିକଟରେ ଭଦ୍ରକର ଆଞ୍ଚଳିକ ଇତିହାସ (ଖ୍ରୀ: ୧୫୬୮-୧୯୪୭) ଉପରେ ଗବେଷଣା ପ୍ରବନ୍ଧ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ପାଇଛନ୍ତି । ଏଥିରୁ ଅନେକଗୁଡ଼ିଏ ତଥ୍ୟର ସନ୍ଧାନ ମିଳେ । କିନ୍ତୁ ମୁଁ ଯେତେବେଳେ ଏହି ନାଟକ ଲେଖିଥିଲି ସେତେବେଳେ ଏ ସବୁ ତଥ୍ୟର ସନ୍ଧାନ ପାଇ ନଥିଲି । ଗରଦପୁର, ସଂଗତ, ବାଙ୍କା ବଜାରର ବୟୋବୃଦ୍ଧ ବ୍ୟକ୍ତିମାନଙ୍କ ସହିତ ଆଲୋଚନା କରି ଏବଂ ଜନଶ୍ରୁତିକୁ ଆଧାର କରି ଏ ନାଟକ ଲେଖିଥିଲି । ଏଥିରେ ରମାବଲ୍ଲଭ, ବଂଶୀବଲ୍ଲଭ, ଗିରିଧାରୀଲାଲା, ଜଗବନ୍ଧୁ ଓ ସତ୍ୟବତୀଙ୍କୁ ଛାଡ଼ି ଦେଲେ ଅନ୍ୟସବୁ ଚରିତ୍ର କଳ୍ପିତ । ଓଡ଼ିଆ ନାଟ୍ୟ ସାହିତ୍ୟ ପରଂପରାରେ ଐତିହାସିକ ତଥା ଚରିତ ନାଟକଗୁଡ଼ିକରେ ଯେପରି ଇତିହାସ, ଜନଶ୍ରୁତି ଓ କଳ୍ପନାର ମିଶ୍ରଣ ହୋଇଛି, ଉପସ୍ଥିତ ନାଟକରେ ମୁଁ ତାହା ଅବଲମ୍ବନ କରିଛି । କବିଙ୍କର ଜନ୍ମ ସଙ୍ଗତରେ କିମ୍ବା ସଛିଆରେ, ସେ ସଂପର୍କରେ କେତେକେ ବାଦାନୁବାଦ କରିଥା'ନ୍ତି । କିନ୍ତୁ ମୁଁ ଚାରୋଟି ଦଶନ୍ଧି ପୂର୍ବରୁ ଯେଉଁ ତଥ୍ୟ ସଂଗ୍ରହ କରିଥିଲି ସେଥିରୁ ସିଦ୍ଧ ହୋଇଥିଲା ଯେ ତାଙ୍କ ଜନ୍ମ ସଂଗତ ଗ୍ରାମରେ ଏବଂ ମାମୁଁ ଘର ସଛିଆ ଗ୍ରାମରେ । ତା'ର ଗୋଟାଏ ଆପାତସିଦ୍ଧ ପ୍ରମାଣ ହେଲା ମୋଗଲ ତମାସା । ପ୍ରଥମେ କବିଙ୍କ ଜୀବଦ୍ଦଶାରେ ସଂଗତର ପ୍ରାଚୀନ ମହାଦେବ ଶ୍ରୀ ଶ୍ରୀ ହଟନାଗରଜୀଉଙ୍କ ପ୍ରାଙ୍ଗଣରେ ଏହି ତମାସା ଅଭିନୀତ ହୋଇଥିଲା । ଏହି ମହାଦେବଙ୍କର ପ୍ରତିଷ୍ଠାନ ସପ୍ତଦଶ ଶତାବ୍ଦୀର ଶେଷଭାଗରେ ହୋଇଥିବାର ଅନୁମାନ କରାଯାଏ । ବଂଶାନୁକ୍ରମିକ ଭାବେ ଭଦ୍ରକର ବିଶିଷ୍ଟ "ବହଳୀ" ପଦବୀଧାରୀ ବ୍ରାହ୍ମଣ (ମୋର ମାମୁଁବଂଶ)ମାନେ ଏ ପର୍ଯ୍ୟନ୍ତ ଏହାର ପୂଜା କରି ଆସିଛନ୍ତି । ଉତ୍ତରାଧିକାର ସୂତ୍ରରେ ଶ୍ରୀ ହଟନାଗରଙ୍କ ବିଜେସ୍ଥଳୀ ଓ ତାଙ୍କ ସମ୍ମୁଖସ୍ଥ ଦୁଇଗୁଣ୍ଠ ଜମି ଭଦ୍ରକ ତହସିଲ ଦ୍ୱାରା ମୋର ନାମରେ ପଟ୍ଟା କରାଯାଇଛି । ଏ ଜମି ଦହଣାଶୁଣି ମୌଜାସ୍ଥିତ । ପ୍ରୋକ୍ତ ଦୁଇ ଗୁଣ୍ଠ ଜମିରେ ହୁଏତ ବଂଶୀବଲ୍ଲଭଙ୍କର ଗୃହସ୍ଥଳୀ ଥିଲା । ଏଣୁ ଏହି ଜମିରେ ମୁଁ ବଂଶୀବଲ୍ଲଭଙ୍କ ନାମରେ ଏକ ଉଦ୍ୟାନ ଓ ସ୍ମୃତିସ୍ତମ୍ଭ ଗଢ଼ିବାର ଯୋଜନା କରିଛି ।

ଦ୍ୱିତୀୟ ପ୍ରମାଣ ହେଲା କବି ବଂଶୀବଲ୍ଲଭ ସାଳନ୍ଦୀ ନନ୍ଦୀ ଉତ୍ତରବାହିନୀ ହୋଇଥିବା ସ୍ଥାନରେ ପ୍ରତିଷ୍ଠିତ ଉତ୍ତରେଶ୍ୱର ମହାଦେବଙ୍କ ପୀଠରେ ସାଧନା କରିଥିବାର ଜନଶ୍ରୁତି ରହିଛି । ହିନ୍ଦୁ ପରମ୍ପରାରେ ନଦୀ ଉତ୍ତରବାହିନୀ ହେବାସ୍ଥଳ ଅତ୍ୟନ୍ତ ପବିତ୍ର ଓ ଆଧ୍ୟାତ୍ମିକ ପରିବେଶରେ ସମୃଦ୍ଧ । ଯେପରି କାଶୀର ପ୍ରସିଦ୍ଧି ନିର୍ଭର କରେ ସେଠାରେ ଗଙ୍ଗାନଦୀ ଉତ୍ତରବାହିନୀ ହୋଇଥିବା ଉପରେ । ଭଦ୍ରକର ଉତ୍ତରବାହିନୀରେ ଅଦ୍ୟାବଧି ମକର ସଂକ୍ରାନ୍ତି ଦିନ ସାଳନ୍ଦୀ ନଦୀରେ ସ୍ନାନ ଓ ଉତ୍ତରେଶ୍ୱର ଦର୍ଶନ ସହିତ ଏକ ବିରାଟ ମେଳା ବା ବାଲିଯାତ୍ରା ଅନୁଷ୍ଠିତ ହୋଇ ଆସୁଛି । ତା'ର ଇତିହାସ ଏ ପର୍ଯ୍ୟନ୍ତ ମିଳିନାହିଁ । ଉତ୍ତରବାହିନୀ ଓ ତା'ର ଆଖପାଖ ଗ୍ରାମଗୁଡ଼ିକରେ (ଯଥା ବାଲିପାଟଣା, ହାତୀସାହି, ତେମୁହାଣୀ) ପ୍ରତିଷ୍ଠିତ ବିରାଟ କୃଷକ ବସ୍ତି ସମୂହ ଦୁଇଟି କଥାର ସୂଚନା ଦିଏ — ନଦୀ କୂଳର ଉର୍ବର ଚାଷ ଜମି ଏବଂ ଓଡ଼ିଶାର ରାଜା ମୁକୁନ୍ଦଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ପାଇକ ସମୁଦାୟ । ପୁରୁଣା ବଜାର ବାବୁସାହି ନିବାସୀ ଯତୀନ୍ଦ୍ର କୁମାର ମହାପାତ୍ର ତାଙ୍କର "ବହ୍ନିକନ୍ୟା" ଉପନ୍ୟାସରେ ଉଲ୍ଲେଖ କରିଛନ୍ତି ପାଇକ ସମୁଦାୟ ସହିତ ବଙ୍ଗ ନବାବଙ୍କର ଯୁଦ୍ଧ, ଯେଉଁ ଯୁଦ୍ଧ ପରେ ପରେ ମୁକୁନ୍ଦଦେବଙ୍କ ଅବସାନ

ଭଦ୍ରକର ସାଂସ୍କୃତିକ ଇତିହାସ ଏକ ମହାନ୍ ପରଂପରା । ସାଳନ୍ଦୀ ନଦୀ ସର୍ପାକାରରେ ଭଦ୍ରକ ସହରକୁ ବହୁଧା ବିଭକ୍ତ କରିଛି । ହଦଗଡ଼ର ବନ୍ଧ ହେବା ପୂର୍ବରୁ ଏହି ସାଳନ୍ଦୀ ନଦୀର ଉର୍ବର ତଟଦେଶରେ କାର୍ତ୍ତିକ ମାସ ଠାରୁ ଜ୍ୟେଷ୍ଠ ମାସ ଶେଷ ପର୍ଯ୍ୟନ୍ତ ଯେଉଁ ଫସଲ ହେଉଥିଲା ଏବଂ ଏହି ଫସଲ ପାଇଁ ଭଦ୍ରକ ଯେପରି ସମୃଦ୍ଧ ଓ ସୌନ୍ଦର୍ଯ୍ୟଶାଳୀ ଥିଲା ସେ ଆଜି କେବଳ ସ୍ମୃତିର ଛାୟା ହୋଇ ରହିଯାଇଛି । ଶରତ୍ ଋତୁ ଠାରୁ ବର୍ଷା ଋତୁ ପର୍ଯ୍ୟନ୍ତ ସାଳନ୍ଦୀର କାଚକେନ୍ଦୁ ନୀଳ ଜଳରାଶିର ମନ୍ଦ ପ୍ରବାହ ପାଇଁ କବି ଚିନ୍ତାମଣି ଏହି ନଦୀକୁ ଯଥାର୍ଥରେ ଉତ୍କଳର କାଳିନ୍ଦୀ ବା ଯମୁନା ବୋଲି ଅଭିହିତ କରିଛନ୍ତି । ମନେ ପଡ଼େ ସଂସ୍କୃତ କବି ପଣ୍ଡିତ ଜଗନ୍ନାଥଙ୍କର ପଦ — କାଳିନ୍ଦୀ ତଟ ଦ୍ରୁମା ବଲମ୍ବିନୀ ମଦୀୟମତି ଚୁମ୍ବିନୀ ଭବତୁ କାଽପି କାଦମ୍ବିନୀ । ଏହି ପଦରେ ଥିବା କାଳିନ୍ଦୀ ପରିବର୍ତ୍ତେ ସାଳନ୍ଦୀ ଶବ୍ଦ ବ୍ୟବହାର କଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ । ସାଳନ୍ଦୀ କୂଳରେ ମୋର ଜନ୍ମ ଠାରୁ ଆଦ୍ୟ ଯୌବନ ପର୍ଯ୍ୟନ୍ତ ଯେଉଁ ସବୁ ଅନୁଭୂତି ଚିତ୍ରିତ ରହିଛି ମୋର ଚିତ୍ତପଟରେ ତାର ପ୍ରକାଶ ମୁଁ ସହସ୍ର ସହସ୍ର ପୃଷ୍ଠାରେ ମଧ କରି ପାରିବି ନାହିଁ । ଯେମିତି ଲେଖିଛନ୍ତି ପୁଷ୍ପଦନ୍ତ ଗନ୍ଧର୍ବ ତାଙ୍କର ମହିମ୍ନ ସ୍ତବରେ — ଯଦି ସମଗ୍ର ପୃଥିବୀ ହୁଏ ଲେଖନ ପତ୍ର, ସପ୍ତ ସମୁଦ୍ର ହୁଏ ମସ୍ୟାଧାର, ସୁରତରୁବର ଶାଖା ହୁଏ ଲେଖନୀ ଏବଂ ସ୍ୱୟଂ ବାଗ୍‌ଦେବୀ ଅନନ୍ତ କାଳ ଧରି ଲେଖି ଚାଲନ୍ତି ତେବେ ମଧ ସଦାଶିବ ଶଙ୍କରଙ୍କର ଗୁଣଗାନ ସଂପୂର୍ଣ୍ଣ ହେବ ନାହିଁ । ଭଦ୍ରକର ଏହି ଅନୁପମ ପ୍ରାକୃତିକ ପରିବେଶରେ ଓଡ଼ିଶାର ଆଦି ନାଟ୍ୟକାର ବଂଶୀବଲ୍ଲଭଙ୍କର ଜନ୍ମ ଓ ସାଧନା ଏକ ସ୍ୱାଭାବିକ ଐତିହାସିକ ଘଟଣା ।

ଇତିହାସ ସମର୍ଥନ କରୁଛି ବଂଶୀବଲ୍ଲଭ ତାଙ୍କର ତମାସାଗୁଡ଼ିକ ମରାଠୀ ଲୋକନାଟ୍ୟ ତମାସାର ଅନୁକରଣରେ ରଚନା କରିଥିଲେ । ମୋ ସହିତ ଏକମତ ହୋଇ ଡକ୍ଟର ପ୍ରଭାତ ମହାନ୍ତି ତାଙ୍କର ପ୍ରୋକ୍ତ ଗବେଷଣା ପ୍ରବନ୍ଧରେ ଏକଥା ମଧ ଉଲ୍ଲେଖ କରିଛନ୍ତି । ତେବେ ପାର୍ଥକ୍ୟ ରହିଛି ଭାଷା ଏବଂ ମୋଟିଭ୍ ମଧରେ । ମରାଠୀ ତମାସାର



ଭାଷା କେବଳ ମରାଠୀ । କିନ୍ତୁ ବଂଶୀବଲ୍ଲଭଙ୍କ ତମାସାଗୁଡ଼ିକ ଓଡ଼ିଆ, ବଂଗଳା, ହିନ୍ଦୀ ଓ ଉର୍ଦ୍ଦୁ ଭାଷାର ମିଶ୍ରଣ । ଯେମିତି ସଂସ୍କୃତ ସାହିତ୍ୟର ଭାଣକ । ଏ ସଂପର୍କରେ ଏକ ପୂର୍ଣ୍ଣାଙ୍ଗ ତୁଳନାତ୍ମକ ସାହିତ୍ୟ ଅଧ୍ୟୟନ ଏହି ପ୍ରସ୍ତାବନାରେ ଦେଇ ହେବ ନାହିଁ । ଅନ୍ୟତ୍ର ପ୍ରକାଶ କରିବାର ବାସନା ରହିଲା । ତେବେ ଯେତିକି ଆବଶ୍ୟକ କେବଳ ସେତିକି ଉଲ୍ଲେଖ କରାଯିବ । ଆକବର ତାଙ୍କର ଅଧିକୃତ ଉପକୂଳବର୍ତ୍ତୀ ଓଡ଼ିଶାକୁ ପାଞ୍ଚଟି ସରକାରରେ ବିଭାଜିତ କରିଥିଲେ — ଜଳେଶ୍ୱର, ଭଦ୍ରକ, କଟକ, କଳିଙ୍ଗ ଦଣ୍ଡପାଟ ଓ ରାଜ ମହେନ୍ଦ୍ରୀ । ସମଗ୍ର ଓଡ଼ିଶା ପ୍ରଦେଶକୁ ମୋଗଲମାନେ ଏକ ସୁବା ଭାବେ ଅଭିହିତ କରିଥିଲେ ଓ ଏହାର ମୁଖ୍ୟଙ୍କୁ କୁହା ହେଉଥିଲା ସୁବାଦାର । ଓଡ଼ିଶା ସୁବା ଉପର୍ଯ୍ୟୁକ୍ତ ପାଞ୍ଚଟି ସରକାରରେ ବିଭକ୍ତ ଥିଲା । ସରକାରର ମୁଖ୍ୟ ଥିଲେ ଫୌଜଦାର । ପ୍ରତ୍ୟେକ ଫୌଜଦାରଙ୍କ ଅଧୀନରେ ଥିଲେ କେତୋଟି ଅମିଲ ବା ଅମଲ ଗୁଲଜାର । ପ୍ରତ୍ୟେକ ସରକାର କେତୋଟି ପରଗଣାରେ ଏବଂ ପ୍ରତ୍ୟେକ ପରଗଣା କେତୋଟି ମୌଜାରେ ବିଭକ୍ତ ହୋଇଥିଲା । ପରଗଣାର ମୁଖ୍ୟଥିଲେ ସିକ୍‌ଦାର । ସିକ୍‌ଦାରଙ୍କ ଅଧୀନରେ କେତେକ ରେଭିନ୍ୟୁ ଅଫିସର୍ ବା କଲେକ୍ଟର ଥିଲେ ଯେଉଁମାନଙ୍କୁ କୁହା ହେଉଥିଲା ମିର୍ଜା । ବିଚାର ବିଭାଗର ମୁଖ୍ୟଙ୍କୁ କୁହାହେଉଥିଲା କାଜି । ଖ୍ରୀ:୧୭୫୧ରେ ମରହଟ୍ଟାମାନେ ଓଡ଼ିଶାର ମୋଗଲବନ୍ଦୀ ଅଞ୍ଚଳ ଦଖଲ କଲେ ଏବଂ ସରକାରର ନାମ ଦେଲେ ଚକଲା । ସେମାନେ ବସ୍ତୁତଃ ଶାସନ ପଦ୍ଧତି ଅଥବା ସାଂସ୍କୃତିକ ସଂସ୍କାର ବା ନବୀକରଣ ଉପରେ କୌଣସି ଧ୍ୟାନ ବା ଗୁରୁତ୍ୱ ନ ଦେଇ କେବଳ ଅର୍ଥ ସଂଗ୍ରହରେ ଲାଗିଲେ ଏବଂ ସ୍ଥଳ ବିଶେଷରେ ଲୁଟ୍‌ତରାଜ ମଧ କଲେ । ଓଡ଼ିଶାରେ ମରହଟ୍ଟା ଶାସନର ସମୟ ହେଲା ଖ୍ରୀ ୧୭୫୧ ରୁ ଖ୍ରୀ:୧୮୦୩ । ଏହି ସମୟ ମଧରେ ଦିଲ୍ଲୀର ମୋଗଲ ଦରବାରରେ ତିନି ଜଣ ବାଦଶାହ ଗାଦିନସୀନ ଥିଲେ:

ଅହମଦ ସାହ ଖ୍ରୀ: ୧୭୪୮-୧୭୫୪

ଆଲମ ଗିରି ୨ୟ ଖ୍ରୀ: ୧୭୫୪-୧୭୫୯

ସାହ ଆଲମ ୨ୟ ଖ୍ରୀ: ୧୭୫୯-୧୮୦୮



# ଚରିତ୍ର

| | |
|---|---|
| ରମ୍ୟାବଲ୍ଲଭ | ବଂଶୀବଲ୍ଲଭଙ୍କର ବଡ଼ଭାଇ |
| ସମ୍ରାଟ୍ | ଦିଲ୍ଲୀର ସମ୍ରାଟ୍ |
| ବଂଶୀବଲ୍ଲଭ (ଛୋଟ) | କବି |
| ଆଚାର୍ଯ୍ୟ ଶୁକଦେବ | ଗ୍ରାମ ଚତୁଷ୍ପାଠୀର ଶିକ୍ଷକ |
| ବଂଶୀବଲ୍ଲଭ (ବଡ଼) | କବି |
| ଗିରିଧାରୀ ଲାଲ୍ | କବିଙ୍କର ପ୍ରତିଦ୍ୱନ୍ଦ୍ୱୀ |
| ଜଗବନ୍ଧୁ | କବିଙ୍କର ଭଣଜା |
| ନବବର | ଗ୍ରାମବାସୀ |
| ହଟନାଗର | ଗ୍ରାମବାସୀ |
| ବିରଞ୍ଚି | ହଟନାଗରଙ୍କ ଶଳା |
| ଖଲିଫା | ସମ୍ରାଟଙ୍କ ମନ୍ତ୍ରୀ |
| ମୁନିର୍ମ୍ | ସମ୍ରାଟଙ୍କ ପରିଚାରକ |
| ସରସୀ | କବିଙ୍କ ମାନସୀ |
| ସତ୍ୟବତୀ | କବିଙ୍କ ମା |
| ସୀତାମଣି | ହଟର ସ୍ତ୍ରୀ |
| ଭାଉଜ (ସୁମତି) | ରମାବଲ୍ଲଭର ସ୍ତ୍ରୀ |

କେତୋଟି ଛୋଟ ପିଲା, ସେବକ ଓ ଗ୍ରାମବାସୀ

# ପ୍ରଥମ ଅଙ୍କ

## (୧)

(ସଙ୍ଗତର ହଟନାଗରଙ୍କର ମନ୍ଦିର । ଆରତୀ ସମୟ । ଘଣ୍ଟା ଘଡ଼ି ଶବ୍ଦରେ ମନ୍ଦିର ଉଚ୍ଛୁଳି ପଡୁଛି । ଗ୍ରାମବାସୀ ଭକ୍ତମାନେ ମୂର୍ତ୍ତି ସମ୍ମୁଖକୁ ଛାଡ଼ି ଦୁଇଟି ଧାଡ଼ିରେ ଠିଆହୋଇ ଚାହିଁଛନ୍ତି ବିଗ୍ରହ ଏବଂ ସେବକର ଆରତୀକୁ । କିଛି ସମୟ ପରେ ଆରତି ସରିଗଲା । ଉପସ୍ଥିତ ଦର୍ଶକମାନେ ସ୍ତୁତି ଗାନ କଲେ । )

ଭଜରେ ପଶୁପତି ପ୍ରସନ୍ନେ ବିରାଜେ । (ଘୋଷା)
ହେମଗିରି ନନ୍ଦିନୀ ସଦା ଯା'ର ବନ୍ଦିନୀ
ତ୍ରଇଲୋକ୍ୟ ପତି ଆଜ ରାଜେ ।୦।

ସୁରାସୁର ବନ୍ଦିତ ବିଭୂତି ବିଲେପିତ
ଡମଡମ ଡମ୍ବରୁ ବାଜେ,
ଶିରେ ସୋହେ ଜଟାଜୁଟ
କି ରୁଚି ସର୍ପମୁକୁଟ !
ଉର୍ଜସ୍ୱଳ ଅର୍ଦ୍ଧଚନ୍ଦ୍ର ରାଜେ — ।୧।
ଝରଝର ଝରେ ନୀର ସ୍ୱଚ୍ଛନ୍ଦେ ଗଙ୍ଗାଧାର
ଜଟାଜୁଟେ କି ଚନ୍ଦ୍ରମା ସାଜେ,
ରକ୍ତବର୍ଣ୍ଣ ତ୍ରିଲୋଚନ ଦୁଦୁରାରେ ଶୋହେ କର୍ଣ୍ଣ
ନୀଳକଣ୍ଠେ ନୀଳସର୍ପ ରାଜେ
ବକ୍ଷେ ସର୍ପ ଉପବୀତ —

ଅସ୍ଥିମାଳ ବିଲମ୍ବିତ

ବ୍ୟାଘ୍ରଚର୍ମ କଟୀରେ ବିରାଜେ । ୨ ।

ହସ୍ତେ ରୁଦ୍ରାକ୍ଷ ବଳୟ    ପାଦଯୁଗ କିଶଳୟ

ନଖକୋଣେ ଏ ଜଗତ ହଜେ ।

ହରହର ଦୁଃଖହର    ହେ ପ୍ରଭୁ ହଟନାଗର

ଶରଣ ସେ ପଦଯୁଗ ରଜେ । ୩ ।

(ସମସ୍ତେ ନମସ୍କାର କରି ଗୋଟିଏ ଗୋଟିଏ ଚାଲିଗଲେ । କିନ୍ତୁ ରମାବଲ୍ଲଭ ଯିବା ସମୟରେ ପଛକୁ ଡାକିଲେ ସେବକ)

ସେବକ - ହଇ ରମାବଲ୍ଲଭ ! କିହେ..........

ରମାବଲ୍ଲଭ - (ଫେରିପଡ଼ି) କ'ଣ ମୋତେ ଡାକୁଛନ୍ତି ନନା ?

ସେବକ - ରମାବଲ୍ଲଭ କେତୁଟା ଅଛନ୍ତି କି ଏ ସଙ୍ଗତରେ ?

ରମାବଲ୍ଲଭ - (ହସି) କ'ଣ କିଛି କାମ ଥିଲା ?

ସେବକ - ଆସ ଆସ...ବସିଯିବା ଟିକିଏ । 'ବିଦ୍ୟା ସାଗର' ହେବାପରେ ଆଉ ତ ପଚାରୁ ନାହଁ କାହାରିକୁ....ହଉ ନପଚାର । ହଟନାଗର ମଙ୍ଗଳ କରନ୍ତୁ । ଦିନେ ହେଲେତ ଲୋଡ଼ା ହେବା । ଇଏ କ'ଣ କହୁଥିଲି କି ବଇଁଶୀଟାକୁ ଟିକିଏ ଆଉ ବାଗେଇ ପାରିଲ ନାହିଁ, ଗୋସେଇଁ କୁଳରେ ଟୋକାଟା ନାଁ ବଦରା କଲା ।

ରମାବଲ୍ଲଭ - କ'ଣ କରିବା କୁହନ୍ତୁ ନନା ! ବାପା-ଅଜାଙ୍କ ମାନସମ୍ମାନ ପଦାରେ ପକେଇବା ପାଇଁ କ'ଣ ଆମକୁ ଖୁସି ଲାଗୁଛି ? ଏତେ ତ ଲାଗିଲୁଁ ମାରଧର କଲୁଁ...ଦି'ଦି'ଟା ଭାଇ, ଭଉଣୀ, ମା ଯେତେ ଚେଷ୍ଟା କଲୁଁ ହେଲା ନାହିଁ । ସବୁବେଳେ ଫାଙ୍କି ମାରି ବୁଲିଲା, ପାଖ ପଶିଲା ନାହିଁ । ସବୁବେଳେ ଖାଲି ବଣବୁଦା, ତୋଟା, ନଈକୂଳ, ପୋଖରୀ



ହୁଡ଼ାରେ ବୁଲିଲା; ବାର ବଦନାମୀ ଘରକୁ ଆଣିଲା । କ'ଣ କରିବୁଁ ? ଏତେ ତ ଲାଗିଲୁଁ...ହେଲାନାହିଁ । ତା ଭାଗ୍ୟ...ପରେ ବୁଝିବ.......।

ସେବକ - ହଁ, ତା ନୁହେଁ କ'ଣ ? କହିଛି ଧାଇଁବୁ ଯେତେ ଦୌଡ଼ିବୁ ଯେତେ, କରମ ଘିନି ଫଳିବ ସେତେ । କର୍ମରେ ନାହିଁ । ପାଠ କ'ଣ ଇମିତି ମାରି ଆଣିଲା ପଦାର୍ଥ ହେଇଛି ? ତୁମେତ ବୁଝିଥିବ । ଆଉବା କ'ଣ ଅଧିକ ବୁଝାଇବି ? ତେବେ କହୁଥିଲି କ'ଣ କି କଳା-କୌଶଳ ପାଖରେ କିଛି ଅସାଧ ନାହିଁ । ଯଦି ଏରକମ ସାଧାସିଧି ଚେଷ୍ଟାରେ ନହେଲା, ତେବେ ଅନ୍ୟ କିଛି କଳା କୌଶଳ କରିଦେଖିଥିଲେ ଅବା ହୋଇଥା'ନ୍ତା । କେତେ ବଡ଼ କୁଳରେ ଗୋଟେ କଳଙ୍କ ରହିଯାଉଛି, ଏଇଟା ମୋର କାହିଁକି ସର୍ବିଙ୍କ ମନରେ ଗୋଟାଏ କଷ୍ଟ ।

ରମାବଲ୍ଲଭ - ହବାର କଥା ନନା, ନ ହବ କେମିତି ? ହେଲେ ଛୁଆଟି ବେଳରୁ ବାପା ମରିଗଲେ । ମା ଟିକିଏ ହୁଗୁଳେଇ ଦେଲା । ନହେଲେ ବା....

ସେବକ - ନାହିଁ ହେ ପୂର୍ବାର୍ଜିତ ବିଦ୍ୟା ଯାହା କହନ୍ତି କ'ଣ ମିଛ । କର୍ମରେ ଯାହା ଥିବ ତାହା ତ ପୁଣି ହେବ । ଯଦି ଆଜି ସତ୍ୟନାରାୟଣ ଗୋସ୍ୱାମୀ ବଞ୍ଚିଥା'ନ୍ତେ ତେବେ ବଇଁଶୀ ଏଇରକମ ଡିଆଁ ମାରୁଥାନ୍ତା ? ସେ ତ କର୍ମରେ ଅଛି...ତାଙ୍କ ମରିବାକୁ ନା ଯା'ର ଏ ଦଶା ହେବାକୁ...ହଉ ହଟନାଗରଙ୍କୁ ଜଣାଅ ଆଉ ମୁଁ ଯାହା କହିଲି ଟିକିଏ କଳା-କୌଶଳ ଖଟାଅ...ଦେଖାଯିବ ଯଦି ପିଲାଟା ସୁଧୁରି ଯାଏ...

ରମାବଲ୍ଲଭ - ହଉ ବାବା ଜାଣନ୍ତି.....(ବାହାରୁଥିଲେ । ଏହି ସମୟରେ ହଟନାଗର ଗୋଟିଏ ଥାଳିରେ ସିଧା ନେଇଁ ପହଞ୍ଚି ଠାକୁରଙ୍କୁ ମୁଣ୍ଡିଆ ଟାଏ ମାରିଦେଲେ । ତା'ପରେ —)

ହଟନାଗର - ହେଁ...କିଏ ଗୋସେଇଁ ପୁଅ କିହେ...କ'ଣ ସବୁ ପରାମର୍ଶ ଚାଲିଛି ନନାଙ୍କ ସାଂଗରେ...ମୁଁ ତ ବାବା ଆଚ୍ଛା ପାଲରେ ପଡିଛି ଯେ ପାଳିଟା ଆଣିବାକୁ ବି ତର ସହୁନାହିଁ । କ'ଣ କରିବି ? ମନ୍ଦିରରେ ଟିକିଏ ଭାଗବତ ଚର୍ଚ୍ଚା କରନ୍ତି, ଆଳତି ଦେଖନ୍ତି....ମୋ ଭାଗ୍ୟ ତ ଖରାପ...ତେଇଁକୁ ଘରଣୀଟିଏ ଜୁଟିଛନ୍ତି ଯେ, ଚୂନରୁ ପାନ ଖସିବା ବେଳକୁ ଏକାଥରକେ ଶିବମର୍ଦ୍ଦିନୀ ଦେବୀ । ମୋରତ ସେଇଠି ଶିବ ଆଉ ଦୁର୍ଗାଦର୍ଶନ । ଏଠିକି ଆସିବାକୁ ତ କିଛି ଦରକାର ପଡୁନାହିଁ । ଆଉ ରହିଲା ଭାଗବତ ଚର୍ଚ୍ଚା । ସେଇଟା ବି ସେତିକିବେଳେ ଗୁପ୍ତଖଣ୍ଡକୁ ବି ବାଦ ଦିଆ ଯାଉନାହିଁ । ଦ୍ୱାଦଶ, ତ୍ରୟୋଦଶ, ଚତୁର୍ଦ୍ଦଶ ବେଳେବେଳେ ପଞ୍ଚଦଶ ସ୍କନ୍ଧ ବି ସୃଷ୍ଟି କରୁଛନ୍ତି ଆମ ଘରଣୀ....(ସମସ୍ତେ ହସିଉଠିଲେ ।)

ସେବକ - ହଟ ଯେଉଁ କଥା କହନ୍ତି ନା...

ହଟନାଗର - ମୁଁ କ'ଣ ମିଛ କହୁଛି ? ଯଦି ଚାହୁଁଛ ତେବେ ଯାଇଁ ଟିକିଏ ଦେଖି ଆସିବ ଆମ ଶିବମର୍ଦ୍ଦିନୀଙ୍କୁ...ବେଳ ଠଉରେଇ ।

ରମାବଲ୍ଲଭ - କିହେ, ଏଇ ଛମାସ ଭିତରେ ପୁଣି ଏମିତି କାଣ୍ଡ ?

ହଟନାଗର - କୁହ ନାହିଁ.....କୁହ ନାହିଁ ଭାଇ, ସେ ଯେଉଁ ଦଶା ମୁଁ ଭୋଗୁଛି ସେଠି ଶନିସପ୍ତା ବି ପାରିବ ନାହିଁ । ଆଚ୍ଛା ଜଞ୍ଜାଳରେ ମଣିଷ ପଡିଲା । ନହେଇ ଥା'ନ୍ତା ନାହିଁ । ବଂଶରକ୍ଷା କରିବାକୁ ଯାଇ ଏ ଫଳ...ହଉ ବାବା ହଟନାଗରଙ୍କର ଇଚ୍ଛା...ହଁ କ'ଣ ସବୁ ଶାସ୍ତ୍ର ଆଲୋଚନା ପଡ଼ିଥିଲା ?

ସେବକ - ନାହିଁ ହେ, ଏଇ ବଇଁଶୀଟା କଥା ପଡ଼ିଥିଲା ଯେ, ସେଇଆ ମୁଁ ରମାଙ୍କୁ ବୁଝାଉଥିଲି । ଏତେବଡ଼ ବଂଶରେ ଗୋଟାଏ କଳଙ୍କ ରଖିଲା ପିଲାଟା...କାଳକାଳକୁ ବଦନାମି....

ହଟନାଗର - କୁହ ନାହିଁ...କୁହ ନାହିଁ ନନା, ତା' କଥା । ଆଜି ଦି'ପହରେ ସେ କାର୍ତ୍ତିକା ଆଉ ଶିବାକୁ ନେଇ ଆମର ସେଇ ପିଜୁଳି ଗଛଟାକୁ ନଷ୍ଟ କରି ପକେଇଛି । ଗୋଟେ ଫୁଲ କଷିବି ରଖିନାହାନ୍ତି । ଉପର ଡାଳଦି' ଟାକୁ ଭାଙ୍ଗି ଗଲା ଦିପହର ସାରା ଦୁଲ୍‌ମାଦଲ କରୁଛନ୍ତି । କମିତି କିଜାଣି ଟେର୍ ପାଇ ଆମ ଘରଣୀ ଉଠି ଯିମିତି ନୈଷଧ ରାଗିଣୀଟାକୁ ପଞ୍ଚମକୁ ଉଠେଇଛନ୍ତି, ଆଉ କି ସେଠି ବଇଁଶୀ ଥାଏ, ଏକାଥରେ ମାରିଲା ଡିଆଁ ନଡ଼ା ବଦାଡ଼ିକୁ । ନଡ଼ା ସେତକ ପଡ଼ିଲା ତା ସାଙ୍ଗକୁ ଶାଗ ପଟାଳୀ ବି ଗଲା । ଘରଣୀ ତ ସାତୁଟା ସୁରକୁ ଏକା ସାଙ୍ଗରେ ଚଲେଇଛନ୍ତି । ମୁଁ ପାଟିଶୁଣି ଉଠିଲା ବେଳକୁ ଏ କାଣ୍ଡ...ସତରେ ଗୋସେଇଁ ପୁଅ, ପିଲାଟିକୁ ଟିକିଏ ଆକଟ କର...ଉଦ୍‌ବାଇଜା ହେଇଯାଉଛି । ପଛରେ ପୁଣି ପସ୍ତେଇବ ।...ହଁ ମୁଁ କହିଲି ବୋଲି କିଛି ମନରେ ଭାବିବ ନାହିଁ....

ରମାବଲ୍ଲଭ - ନାହିଁ ହେ ହଟ, ଭାବିବି କାହିଁକି; ତୁମର କ'ଣ ଏକଲା ସେ କ୍ଷତି କରୁଛି, ଗାଁ ଟା ସାରା ସବୁଲୋକ ପରା ପ୍ରତିଦିନ ଆସି ଆମ ଘରେ ହାଜର ହଉଛନ୍ତି । କାହାର ବାଡ଼ି ଭାଙ୍ଗିଲା, କାହାର ଆମ୍ବ ଖାଇଲା ଏଇମିତି ସବୁ...ତା'ସାଙ୍ଗକୁ ସେ କାର୍ତ୍ତିକା ଆଉ ଶିବା ଏ ଦି'ଜଣ ଜୁଟିଛନ୍ତି ଯେ ଏକକୁ ଏକ ବଳି ।

ହଟନାଗର - ଆରୋ ବାବା, ସେ ଯେଉଁ କାର୍ତ୍ତିକା — କାଲିକାର ଅଣ୍ଡା ଖଣ୍ଡେ, ମୁଁ ଯିମିତି ଯାଇ ତାକୁ ଏକଥା ପଚାରିନି ସେ ତ ମୋତେ ମାରେ

[illegible]

ହେଇଗଲା । ଆଗେ ତାଙ୍କ ସାଙ୍ଗ ଛଡେଇ ଦିଅ...ତା'ପରେ ପିଲାଟା ହୁଏତ ବାଟେଇ ଯାଇପାରେ ।

ରମାବଲ୍ଲଭ - ସେଇ କଥା ପରା ନନା ମୋତେ ଏକ୍ଷଣି କହୁଥିଲେ । କିମିତି କଳ କୌଶଳ ଖଟାଇ ତାକୁ ବାଟକୁ ଅଣାଯିବ । ସେଇଟା ମୋର ଦିନରାତି ଚିନ୍ତା....

ହଟନାଗର - ମଲା ଯା' ପୁଣି କହିବାକୁ ଅଛି ନା ? ଚିନ୍ତା ହବନାହିଁ । ତୁମ ବଂଶରେ ପୁଣି କାଳି....ମୁଁ ଭାବୁଛି ହଟନାଗର ସହିପାରିବେ ନାହିଁ। ଏଟାକୁ ସେ ନିଶ୍ଚୟ ବାଗେଇଦେବେ ।

ରମାବଲ୍ଲଭ - (ଦୀର୍ଘ ନିଃଶ୍ବାସ ପକାଇ) ହଉ ତାଙ୍କରି ଇଛା....(ଜୁହାର ହୋଇ ଯିବାକୁ ବାହାରୁଥିଲେ ।)

ହଟନାଗର - କ'ଣ ବାହାରିଲ କି ?

ରମାବଲ୍ଲଭ - ହଁ ଯିବା । ରାତି ବି ହେଲାଣି । ନନା ପୁଣି ରୋଷେଇ ଲଗେଇବେ । ତେଣେ ଘରେ ଆମର ରୋଷେଇ ସରିବଣି...

ହଟନାଗର - ରୁହ ମ' କ'ଣ ଇମିତି ଲୁଆ ଛାଡ଼ିଆସିଲା ପରି ହେଉଛ । ଯିବତ ! ମୁଁ କ'ଣ ଯିବିନି ? ସମୟ ଟିକିଏ ପାଇଥିଲି ଯେ ଭାବିଥିଲି କିଛି ଚର୍ଚ୍ଚା କରିବା ବୋଲି । ତେଇଁ କି ତୁମର ରୋଷେଇ ସରିବଣି । କହୁଛି ପରା ଘରକୁ ଘରଣୀ [illegible] ମୋର ସବୁ ସରିଲାଣି ।

ସେବକ - ହଉ...ହଉ ହଟ ଯେତେବେଳେ [illegible] ବସି ଯାଅ ଟିକିଏ ରମା, ଏଇଠି ନହେଲେ [illegible] ପାଇ ଚାଲିଯିବ । ମୁଁ ଘରକୁ କହି ଆଉଛି ।



ଆସେ । ବସିଥାଅ ହଟ ।

ସେବକ - ମଲା ଯେ ପୁଣି ଗୋଟାଏ କଷ୍ଟ ! ତୁମେ ବସ ମୁଁ ଯାଉଛି ।

ହଟନାଗର - ଏଇଠି ଥିଲା ପରି ଆସିବ ଏକା ! ତୁମେ ନଆସିଲେ ଜମିବ ନାହିଁ ଭଲ ।

ସେବକ - ଏଇ ଆସିଲି ବୋଲି ଜୁହ (ଚାଲିଗଲେ ।)

ରମାବଲ୍ଲଭ - କଉ କଥା କହିବ ?

ହଟନାଗର - ଗୀତା ଚର୍ଚ୍ଚା ହଉ । ଯେଉଁ ବ୍ରହ୍ମ ଆଉ କର୍ମ ବିଷୟରେ ଭଗବାନ କହିନାହାନ୍ତି....

ରମାବଲ୍ଲଭ- ଓ, 'ଅକ୍ଷର ବ୍ରହ୍ମଯୋଗ' କଥା କହୁଛ ତ' ?

ହଟନାଗର - ହଁ...ହଁ ସେଇ ''ଅକ୍ଷର ବ୍ରହ୍ମଯୋଗ'' । ମୁଁ ଯେତେଥର ପଢ଼ିଲିଣି ସେଇଟା କାହିଁକି ବୁଝିପାରୁନାହିଁ । ଟିକିଏ ଭଲଭାବରେ ବୁଝାଇ ଦେବ ଏକା ।

ରମାବଲ୍ଲଭ - ବାସ୍ତବରେ ଗୀତା ମଧରେ ଏହି ଅଧାୟଟା ଟିକିଏ ବୁଝିବା ପାଇଁ କଷ୍ଟ...ହେଲେ ଖୁବ୍ ମନଦେଇ ଦୁଇଚାରିଥର ପଢ଼ିଦେଲେ ବୁଝି ହେବ । (ସେବକର ଆଗମନ ।)

ସେବକ - କ'ଣ ଆରମ୍ଭ ହୋଇଗଲାଣି ?....କଉ ବିଷୟରେ ?

ହଟନାଗର - ନା ମ' ଏଇତ ହବ ହବ ହଉଛି...ଏଇ ଗୀତାର ଅକ୍ଷର ବ୍ରହ୍ମଯୋଗ ବିଷୟରେ ।

ସେବକ - ଆଜି ତା'ହେଲେ ଆମର ବଡ଼ ଭାଗ୍ୟ ହଟ...ଟିକିଏ ମୁଁ ରୋଷେଇ ବସେଇ ଦେଇ ଆସେଁ । ତା' ପରେ ଆରମ୍ଭ କରିବ ।

ହଟନାଗର - ଆରେ ତୁମେ ନଆସିଲେ କ'ଣ ଆରମ୍ଭ ହେଲାଣି ? ହଉ ଯାଅ....ଯାଅ...କିନ୍ତୁ ଶୀଘ୍ର ଆସ ନନା...(ସେବକର ପ୍ରସ୍ଥାନ ପରେ ନଟବର ଆଉ ଗୋଟିଏ ଗ୍ରାମବାସୀ ହରିଙ୍କ ଆଗମନ । ) ଆରେ ଆରେ ଆଜି ତା'ହେଲେ ଭଲ ରକମର ଆଡ୍ଡାଟା ଜମିଯିବ । ବସ ବସ ନଟବର ! ବସୁନ କାହିଁକି ହରିଆ-ଦି ! (ସମସ୍ତେ ବସିଗଲେ)

ନଟ - କିହେ ଗୋସେଇଁ ପୁଅ କିଏ....ନମସ୍କାର ! (ରମାର ପ୍ରତିନମସ୍କାର) ଆଜି ତା'ହେଲେ ବଡ଼ ଭାଗ୍ୟ ଆମର । ସ୍ୱୟଂ ବିଦ୍ୟାସାଗରଙ୍କର ଦେଖାହେଲାଣି, ପୁଣି ଏମିତିକା ବେଳରେ । ଆମ ଆସିବାଟା ବଡ଼ ଅନୁକୂଳରେ ହେଇଛି । ନୁହେଁ ହରିଆ ଦି' ?

ହରି - ମଲା ଯା ପୁଣି କହିବାକୁ ଅଛି ? ଏଇ ସତ୍ୟାନନ୍ଦଙ୍କ ପୁଅତ ?

ନଟ- ହଁ ମ ! ତୁମେ ଚିହ୍ନିକି ଅଚିହ୍ନା କରୁଛ ନା କ'ଣ ?

ହରି - ବିଦେଶରେ ରହିବା ଦିନରୁ କ'ଣ ଗାଁ ସାଙ୍ଗରେ ଆଉ ସମ୍ବନ୍ଧ ଅଛି ନଟ ? ଯା' ହେଉ ସତ୍ୟାନନ୍ଦଙ୍କର ପୁଅ ଦୁଇଟିତ ହେଇଥିଲେ ବାପା-ମା'ର ନାଁ ଖେଳେ । କୁଳ ଉଜ୍ଜ୍ୱଳ କଲେ । ହଉ ବାବା ଆମ ଆଇଷ ନେଇ କି ସବୁ ବଞ୍ଚିଥାଅ !...ହେଲେ ସେ ସାନଟି କଥା କ'ଣ ହେଲାରେ ରମା !

ରମାବଲ୍ଲଭ - କୁହ ନାହିଁ ଦାଦି ତା' କଥା । ତାକୁ ଆମେ ଆଉ ପାରିଲୁ ନାହିଁ । ସରିଗଲା ପିଲାଟା !...ଯା ତା ଭାଗ୍ୟ !

ହରି - ହଁ ତା' ନୁହେଁ କ'ଣ ବାପ ! ସବୁଭାଗ୍ୟ/ଏଇ ଆମ ପୁଅଟାକୁ ଦେଖୁନ୍ତୁ କ'ଣ ହେଇଗଲା । ସବୁ କର୍ମ ଦୋଷ....

(ସେବକ ଉପସ୍ଥିତ)

ସେବକ - କ'ଣ ଆରମ୍ଭ ହେଇଗଲାଣି ?

ହଟ - ନାଇଁମ ଏଇତ ନଟହେରିକା ଆସିପହଞ୍ଚିଗଲେ ଯେ କଥା ଭାଷା ହେଉଚୁଁ । ଆଉ ଆରମ୍ଭ ହେଲା କେତେବେଳେ ?

ନଟ - କ'ଣ ଚର୍ଚ୍ଚା ହେବକି ?

ହଟ - ଏଇ ଗୀତାର "ଅକ୍ଷର ବ୍ରହ୍ମଯୋଗ" ବିଷୟରେ ଚର୍ଚ୍ଚା କରିବା ପାଇଁ ମୁଁ ରମାକୁ କହିଲି ।

ନଟ - ମୁଁ ପରା ଜାଣେ । ଯଉଁଠି ରମା ଥିବେ ସେଠିକ'ଣ ଏଣୁତେଣୁ କଥା ପଡ଼ିବ...ହଉ...ହଉ ଆରମ୍ଭ ହେଉ ଏବେ ।

ରମା - ("ନାରାୟଣଂ ନମସ୍କୃତ୍ୟ"....ଇତ୍ୟାଦି ପଢ଼ିଲା ପରେ ଶ୍ଳୋକ ପଢିଲେ ।)

"କିଂ ତଦ୍‌ବ୍ରହ୍ମ କିମଧ୍ୟାତ୍ମଂ କିଂ କର୍ମ ପୁରୁଷୋତ୍ତମ ।
ଅଧିଭୂତଂ ଚ କିଂ ପ୍ରୋକ୍ତ ମଧିଦୈବଂ କିମୁଚ୍ୟତେ ॥
ଅଧିଯଜ୍ଞଃ କଥଂ କୋଽତ୍ର ଦେହେଽସ୍ମିନ୍ମଧୁସୂଦନ ।
ପ୍ରୟାଣ କାଳେଚ କଥଂ ଜ୍ଞେୟୋଽସି ନିୟତାତ୍ମଭିଃ" ॥

ହଟ - ଆହା, କି ସୁନ୍ଦର ଶ୍ଳୋକ ଗୁଡ଼ିଏ ! ମୋର କାହିଁକି ଜମା ମନେରହୁନି....

ରମା - ଏଠାରେ ଶ୍ରୀକୃଷ୍ଣ ଜ୍ଞାନ-ବିଜ୍ଞାନ ବିଷୟରେ ଅର୍ଜୁନଙ୍କୁ କହିଲେ ଯେ ଏ ଯେଉଁ ମୋହମାୟା ପୂର୍ଣ୍ଣ ସଂସାର, ଏଠି ମନୁଷ୍ୟ ଜନ୍ମଗ୍ରହଣ କରିବା ମାତ୍ରକେ ମୋହମାୟାରେ ଛନ୍ଦି ହୋଇପଡୁଛି । କିନ୍ତୁ ପ୍ରକୃତରେ ଯେ ଜ୍ଞାନୀ ଯେ ଏ ସଂସାର ଏବଂ ଆତ୍ମା ବିଷୟରେ ସମ୍ୟକ୍ ଜ୍ଞାତ, ଯେ ସୁଖ-ଦୁଃଖ, ଶୀତ-ଉଷ୍ଣ ଏବଂ ଭଲମନ୍ଦକୁ ସମାନ ଚକ୍ଷୁରେ

ଦେଖେ, ସେ କେବଳ ଏହି ସଂସାରରୁ ମୁକ୍ତି ଲାଭ କରିପାରେ ଏବଂ କର୍ମ ଓ ବ୍ରହ୍ମ ବିଷୟରେ ସମ୍ୟକ୍ ଅବଗତ ହୁଏ; ଆହୁରି ମଧ୍ୟ ଯେ ଅଧିଭୂତ, ଅଧିଦୈବ ଏବଂ ଅଧିଯଜ୍ଞ ଠାରୁ ଭିନ୍ନ, ଏପରି ଭଗବାନଙ୍କୁ ନିଶ୍ଚିତ ଭାବରେ ଜାଣି ପାରିଛି ସେ ମୃତ୍ୟୁ ସମୟରେ ମଧ୍ୟ ତାଙ୍କୁ ଭୁଲି ପାରେନାହିଁ ।

ହଟ - ସେଇଠୁ ଶ୍ରୀକୃଷ୍ଣଙ୍କୁ ଅର୍ଜୁନ ପଚାରିଲେ ଯେ ଅଧିଭୂତ, ଅଧିଦୈବ ଏବଂ ଅଧିଯଜ୍ଞ କ'ଣ ? କର୍ମ ଓ ବ୍ରହ୍ମ ବା କ'ଣ ? ନୁହେଁ !

ନଟ - ତା'ପରେ ଶ୍ରୀକୃଷ୍ଣ କ'ଣ କହିଲେ ?

ରମା - ''ଅକ୍ଷରଂ ପରମଂ ବ୍ରହ୍ମଃ''— ବିରାଟ ବିଶ୍ୱ ବ୍ରହ୍ମାଣ୍ଡର ଯେ ହେଉଛନ୍ତି ମୂଳାଧାର, ଯାହାଙ୍କର ସୃଷ୍ଟି ନାହିଁ କି ଲୟ ନାହିଁ ଯେ ଚିରଦିନ ପାଇଁ ସ୍ଥିତ, ସେ ହେଉଛନ୍ତି ବ୍ରହ୍ମ । ତା'ପରେ, ''ସ୍ୱଭାବୋଽଧ୍ୟାତ୍ମ ଉଚ୍ୟତେ'' — ସେଇ ଯେଉଁ ଅକ୍ଷୟ ବ୍ରହ୍ମ ତାଙ୍କର କିଞ୍ଚିତ୍ ଅଂଶ ସଚରାଚର ସୃଷ୍ଟିର ପ୍ରତ୍ୟେକ ପ୍ରାଣୀଙ୍କ ଦେହରେ ନିହିତ ଅଛି । ସେ ଅଂଶ ହେଉଛି ଅଧ୍ୟାତ୍ମ ଏବଂ ''ଭୂତ ଭାବୋଭବକରୋ ବିସର୍ଗଃ କର୍ମ ସଂଜ୍ଞିତଃ'' — ଯାହା ଦ୍ୱାରା ସୃଷ୍ଟିର ପ୍ରତ୍ୟେକ ପ୍ରାଣୀଙ୍କର ଉତ୍ପତ୍ତି ହୁଏ ଏବଂ ବୃଦ୍ଧି ହୁଏ ତାହାକୁ କର୍ମ କୁହାଯାଏ....ବୁଝି ହେଲା ନା ହରିଆ ଦି' (ହରି ଢୁଳେଇବା ଆରମ୍ଭ କରିଥିଲେ ।) କ'ଣ ଢୁଳେଇଲଣି କି ? (ହସି)

ହରି - (ଚମକି ପଡ଼ି) ଏଁ....ନାଁ....ହଁ କ'ଣ ହେଲା ସେ ଅସୁରଟା ତା'ହେଲେ ମରିଗଲା....!

ହଟନାଗର - ହରିବୋଲ ! ହରିଆ ଦି' ତୁମକୁ ପୁଣି ଏଭିତରେ ନିଦ ଆସିଗଲାଣି ! ଗୀତା ଚର୍ଚ୍ଚା ଭିତରେ ଅସୁର ମରିବ କୁଆଡୁ ?



ହରି - ନାଇଁରେ ବାପା ଦିନସାରା ଖଟି ଖଟି ବେଳ କାହିଁ ଶୁଣିବାକୁ ! ବସୁ ବସୁ ଢୁଳେଇ ପଡ଼ିଥିଲି !...ହଁ ଏବେ କୁହ ।

ହଟନାଗର - ଇଏତ ଗଲା ବ୍ରହ୍ମ, ଅଧ୍ୟାତ୍ମ ଓ କର୍ମ । ତା'ପରେ ଅଧିଭୂତ, ଅଧିଦୈବ ଏବଂ ଅଧିଯଜ୍ଞ କ'ଣ ?

ରମାବଲ୍ଲଭ - ''ଅଧିଭୂତଂ କ୍ଷରୋ ଭାବଃ''— ସମସ୍ତ ପ୍ରାଣୀଙ୍କର ଆତ୍ମା ବ୍ୟତୀତ ବାହ୍ୟ ଆବରଣଟା ହେଉଛି ନଶ୍ୱର ଅର୍ଥାତ୍ ମୃତ୍ୟୁପରେ ସେ ଆବରଣଟା ନଷ୍ଟ ହୋଇଯାଏ ।

ସେବକ - ହଁ, ତା' ନୁହେଁ ଆଉ କ'ଣ ? ଜୀବନ ବାହାରିଗଲା ପାଖରୁ ଏ ଯେଉଁ ପିଣ୍ଡଟା ମାଟିରୁ ଆସିଥାଏ ସେ ପୁଣି ସେହି ମାଟିରେ ମିଶିଯାଏ ।

ରମାବଲ୍ଲଭ - ସେଇ ବାହ୍ୟ ଶରୀରଟାକୁ କୁହାଯାଏ ଅଧିଭୂତ । ତା'ପରେ, ''ପୁରୁଷଶ୍ଚାଧିଦୈବତମ୍'' — ବିରାଟ ସୂର୍ଯ୍ୟମଣ୍ଡଳରେ ଅବସ୍ଥାନ କରନ୍ତି ଯେଉଁ ପୁରୁଷ ସେ ହେଉଛନ୍ତି ଦେବାଧିପତି । ତେଣୁ ତାଙ୍କୁ କୁହାଯାଏ ଅଧିଦୈବ । ''ଅଧିଯଜ୍ଞୋଽହମେବାତ୍ର ଦେହେ ଦେହଭୃତାଂ ବର ।'', ସବାଶେଷରେ କହିଲେ ଯେ, ଭଗବାନ୍ ନିଜେ ସେହି ଅଧିଦୈବଙ୍କ ଠାରେ ଯଜ୍ଞେଶ୍ୱର ରୂପେ ଥା'ନ୍ତି ବୋଲି ତାଙ୍କୁ ଅଧିଯଜ୍ଞ କୁହାଯାଏ ।...ବୁଝି ହେଲା ତ ନନା !

ସେବକ - ମଲା, ତୁମ ବୁଝେଇବ । ପୁଣି ବୁଝି ହେବ ନାହିଁ ? (ହରି ପୂର୍ବପରି ଢୁଳେଇବାକୁ ଆରମ୍ଭ କରି ଦେଇଥିଲେ ।)

ନଟ - ମୋର [illegible] ଟିକିଏ ସନ୍ଦେହ ରହିଗଲା ଗୋସେଇଁ ପୁଅ ! ଆଚ୍ଛା, [illegible]ରାଟ ସୂର୍ଯ୍ୟମଣ୍ଡଳରେ ଅବସ୍ଥାନ କରନ୍ତି ଯେଉଁ ପୁରୁଷ ଏବଂ

ଭଗବାନଙ୍କ ମଧ୍ୟରେ ତଫାତ୍ କ'ଣ ? ସେ କାହିଁକି ଅଧିଦୈବ ଏବଂ ଏ ହେଲେ ଅଧିଯଜ୍ଞ ? (ସେବକ କିଛି ସମୟ ପାଇଁ ଭିତରକୁ ଯାଇ ପୁଣି ଆସିଲେ)

ରମାବଲ୍ଲଭ - ତଫାତ୍ କିଛି ନାହିଁ । ଜଗତର ମୂଳାଧାର ହେଉଛନ୍ତି ବ୍ରହ୍ମ । ପୁରୁଷ କୁହ, ପ୍ରକୃତି କୁହ ଯାହାକୁହ ତାଙ୍କର ସବୁ ଅଂଶ । ସେ ଯେଉଁ ଅଂଶ ସେମାନେ ଅବ୍ୟୟ ନୁହନ୍ତି । ସୃଷ୍ଟି କରିବା ପାଇଁ ତାଙ୍କର ବ୍ୟୟ ହୁଏ । ସେହି ଯେ ପୁରୁଷ ସେ କରନ୍ତି ସୃଷ୍ଟି ଏବଂ ସେଥିପାଇଁ ସହଯୋଗ ଲୋଡ଼ନ୍ତି ପ୍ରକୃତିର । ତେଣୁ ପ୍ରକୃତିର ସହଯୋଗରେ ପୁରୁଷ ସୃଷ୍ଟି କରନ୍ତି । ଅତଏବ ସେ ହେଲେ ସବୁ ବ୍ୟୟ ବସ୍ତୁଙ୍କ ମଧ୍ୟରେ ଶ୍ରେଷ୍ଠ । ସେହି ଦେବାଧିଦେବଙ୍କ ଠାରେ ଭଗବାନ ସ୍ୱୟଂ ଅଧିଯଜ୍ଞ ରୂପେ ରହିଥାନ୍ତି । କିଛି ଫରକ ନୁହେଁ । ସେ ଦେବମାନଙ୍କର ଅଧିପତି ବୋଲି ଅଧିଦୈବ ଏବଂ ଭଗବାନ ଶ୍ରୀକୃଷ୍ଣ ଯଜ୍ଞପୁରୁଷଙ୍କ ରୂପରେ ତାଙ୍କଠାରେ ରୂପାୟିତ ହୋଇଥା'ନ୍ତି ।

ହଟନାଗର - ବାସ୍ତବରେ ଏସବୁ ନିହାତି ଜଟିଳ । ଭଲରୂପେ ଯଦି ଚର୍ଚ୍ଚା କରା ନଯାଏ ତେବେ ଖାଲି ଘରେ ବୁଝ ବା ନବୁଝ ପାଟି ମେଲେଇ ଦି' ଅଧା ତିନି ଅଧା ଗାଇ ଗୋଡ଼େଇଲା ପରି ପଢ଼ିଗଲେ ଫଳ କ'ଣ ହେବ ? ପରିଶ୍ରମ ଯା ସାର ହେବ ।

ନଟ - ହଁ ତା ନୁହେଁ ଆଉ କଣ ? ହଉ ଏବେ ଯିବା । ଯା' ହେଉ ଆସିଥିଲୁଁ ଯେ କର୍ଣ୍ଣ ପବିତ୍ର ହେଇଗଲା । ଉଠ ଉଠ ହରିଆ ଦି ! ଆଉ ପାରିହେବନି ତୁମକୁ । ଆସିଲା ବେଳୁ ଢୁଳଉଛ ।

ହରି - ନାଁ...ନାଁ...ମୁଁ ଢୁଳଉ ନାହିଁ ଯେ କୁହ କୁହ....

ନଟ - ହଁ ଆଉ କହିବେ କ'ଣ ? କାମତ ସରିଲାଣି ଘରକୁ ଯିବା ।

ହରି - ହଉ ଚାଲ୍ । (ଉଠିଲେ ହାଇ ମାରି, ଅଳସଭାଙ୍ଗି । )

ହଟ - କଡ଼ା ନିଦଟାଏ ହେଇଯାଇଥିଲା ଏକା....

ହରି - ହଁରେ ବାପ ! ବଳବହପ ଅଛି କହିବନି କାହିଁକି ? ଆମେ ତ ଆସି ବୁଢ଼ା ହେଲୁଣି...ବଳେ ବୁଝିବ ଯେ....

ନଟ - ହଉ...ହଉ ତୁ ଚାଲ — (ଚାଲିଗଲେ)

ହଟ - ନନା, ତୁମର ରୋଷେଇ କେତେ ଦୂର ଗଲା ?

ସେବକ - ଏଇତ ସଇଲା ଉପରେ । ଠା କରିବା ଏଇନେ । ଗରମ ଗରମ ଦୋ'ଟି ପାଇଦେଇ ଚାଲିଯିବ, ଉଠ ରମାବାବୁ, ମୁଁହ ହାତ ଧୁଅ । ମୁଁ ଠା କରେଁ । ରାତି ବି ହେଲାଣି ।

ରମାବଲ୍ଲଭ - ହଁ ଏବେ କାମ ସାରିବା । (ସମସ୍ତେ ଉଠିଲେ । ପରଦା ଖସିପଡ଼ିଲା ।)

## (୨)

(ଚତୁଷ୍ପାଠୀ । ମଣ୍ଡପ ଉପରେ ଆଚାର୍ଯ୍ୟ ବସିଛନ୍ତି । ବୃଦ୍ଧ ନୁହେଁ ତଥାପି ବୃଦ୍ଧତ୍ୱ ପ୍ରଥମ ପାଦରେ ଉପସ୍ଥିତ । ତଳେ କେତେକ ବାଳକ ଶିକ୍ଷାଲାଭ କରୁଛନ୍ତି । କେତେକ ବ୍ରାହ୍ମଣ ପିଲା ପୁରୁଷସୂକ୍ତ ମୁଖସ୍ଥ କରୁଛନ୍ତି । କେତେକ ସଂକଳ୍ପ ପାଠ ମୁଖସ୍ଥ କରୁଛନ୍ତି । କେତେକ କାଳିଦାସଙ୍କର ରଘୁବଂଶ ଆବୃତ୍ତି କରୁଛନ୍ତି । ଅନ୍ୟ କେତେକ ଗୀତା କିମ୍ବା ଭାଗବତ ପାଠରେ ପ୍ରବୃତ୍ତ । ଏହି ଭାବରେ ସ୍ଥାନଟି ଏକ ଅପୂର୍ବ ଧ୍ୱନିରେ ଝଙ୍କୃତ । ଆଚାର୍ଯ୍ୟ କୌଣସି ଏକ ପୋଥି ଉପରେ ଗଭୀର ମନୋନିବେଶ କରିଛନ୍ତି । କିଛି ସମୟ ପରେ ରମାବଲ୍ଲଭ ଦ୍ୱାଦଶବର୍ଷ ବୟସ୍କ ବଂଶୀବଲ୍ଲଭକୁ ଟାଣି ଟାଣି ଆଣି ସେଠାରେ ପହଞ୍ଚିଲେ । ହାତରେ ଧରିଥିଲେ ଏକ ତାଳପତ୍ର ବିଡ଼ା ଏବଂ

[illegible] ସେଠାକୁ ଆସିବା ପାଇଁ ନିହାତି ନାମଙ୍ଗ । ଏହିପରି ଏକ ପରିସ୍ଥିତି ଦେଖି ପିଲାମାନେ ଚୂପ୍ ହେଇଗଲେ ଏବଂ ଆଚାର୍ଯ୍ୟ ପୋଥି ଉପରୁ ମୁହଁ କାଢ଼ି ଚାହିଁଲେ । ରମାବଲ୍ଲଭ ପ୍ରଣାମ କଲେ ।)

ଆଚାର୍ଯ୍ୟ - କିଏ ରମା କିରେ ?

ରମା - ଆଜ୍ଞା !

ଆଚାର୍ଯ୍ୟ - ବ୍ୟାପାର କ'ଣ ? ବଂଶୀକୁ ଏପରି ଟାଣିଟାଣି ଆଣିବାର କାରଣ କ'ଣ ?

ରମା - ପିଲାଟା ଆଜ୍ଞା ନିହାତି ଅବାଧ ହେଲା । ଆମେ ଆଉ ତାକୁ ପାରିବୁ ନାହିଁ । ଆପଣ ଯଦି ଟିକିଏ ଚେଷ୍ଟା ନକରିବେ ଆମ ବଂଶରେ ଗୋଟାଏ ଦାଗ ରହିଯିବ ।

ଆଚାର୍ଯ୍ୟ - ଆରେ ମୋତେ କ'ଣ ସେଟା ଉଣା ବୋଧ ହେଉଛି ? ନା ମୁଁ ଏହାକୁ ବୁଝିପାରୁନାହିଁ । ଯେତେ ପ୍ରକାର ଚେଷ୍ଟା କଲି ସବୁ ବିଫଳ ହେଲା । ତା'ରି ସାଙ୍ଗର ପିଲା ବାଇଶି କାଣ୍ଡି ପୁରୁଷସୂକ୍ତ, ମଧୁସୂକ୍ତ, ସଂକଳ୍ପ ସୂକ୍ତ ପ୍ରଭୃତି ମୁଖସ୍ଥ କରି ଦେଲେଣି କିନ୍ତୁ ଏ ପର୍ଯ୍ୟନ୍ତ ତା'ର 'ଓଁ' ଲେଖିବା ବି ସମ୍ଭବ ହେଲା ନାହିଁ । ଯା' ହେଲା ହେଲା । ରୁହନ୍ତା କି ସବୁ ସମୟ ପାଇଁ । କିଛି ଅଧିକ ଚେଷ୍ଟା କରନ୍ତି । ଆସିବାର ପ୍ରାୟ ଦୁଇ ତିନିଘଣ୍ଟା ମଧ୍ୟରେ କେତେବେଳେ ମୋ ଅଗୋଚରରେ ଉଠିପଳାଇବ । କେତେବେଳେ ବା ଅନ୍ୟ ପିଲାଙ୍କ ସହିତ କଳି କରିବ । ଏ ବ୍ୟାପାରକୁ ବା ମୁଁ କେମିତି ସହ୍ୟ କରିବି ? ନିହାତି ଯେତେବେଳେ ନହେଲା, ମୁଁ ନିରୁପାୟ ହୋଇ ଛାଡ଼ିଦେଲି । ଯା ଦ୍ୱାରା ହେଇ ପାରିବ ନାହିଁ । ଯଦି ନିଜକୁ ନିଜେ



କେତେବେଳେ ନିଜର ଭୁଲଟା ବୁଝିପାରେ, ସେତେବେଳେ [illegible] ମଣିଷ ହୋଇପାରେ । ଏତଦ୍‌ବ୍ୟତୀତ ଅନ୍ୟ କୌଣସି ଉପାୟରେ ତାକୁ ସୁଧାରି ହୋଇ ପାରିବ ନାହିଁ ।

ରମା - (ଦୀର୍ଘ ନିଃଶ୍ୱାସ ପକାଇଲେ ।) ଆରେ ବଂଶୀ, ତୋ ମତ କ'ଣ ? ଆମ ବଂଶରେ କାଳି ଲେପିବା କ'ଣ ତୋ'ର ଉଦ୍ଦେଶ୍ୟ ?

ବଂଶୀ - ନାଇଁମ...ମୋତେ ଆଚାର୍ଯ୍ୟେ ମାରୁଛନ୍ତି ବୋଲି ମୁଁ ସିନା ପଳଉଛି । ନନା, ତୁମେ ଟିକିଏ ଯଦି କୁହନ୍ତ....

ଆଚାର୍ଯ୍ୟ - ହଇରେ ବଂଶୀ ମୁଁ ତୋତେ ମାରୁଛି ?

ବଂଶୀ - ନାଁ କାହିଁକି, ପୂଜା କରୁଛନ୍ତି !

ଆଚାର୍ଯ୍ୟ - ଆରେ, ତୋ'ର ଅବାଧତା ଯେତେବେଳେ ବଢ଼ିଯାଏ ସେତେବେଳେ ମୁଁ ଆଉ କ'ଣ କରନ୍ତି ? ବାଧ ହୋଇ ପ୍ରହାର କରେ । ତୁ ଏମିତି ଅବାଧ ହେଉଛୁ ବାପା ମାଙ୍କୁ ଅପମାନ ହେଉନାହିଁ ? ବଡ଼ଭାଇ ପରା ବୋପା ପରି । ତୋତେ ସେ କେତେ ବୁଝାଉଛନ୍ତି, କେତେ ମନଦୁଃଖ କରୁଛନ୍ତି, ତଥାପି ତୁ ପାଠପଢୁ ନାହୁଁ ? ଏତେ ଚଗଲା ହେଉଛୁ, ତୋତେ ମାରିବେ ନାହିଁ...

ବଂଶୀ - ମୁଁ ନପଢ଼ିଲେ ତାଙ୍କର କ୍ଷତି କ'ଣ ହେବ କି ?

ଆଚାର୍ଯ୍ୟ - ତାଙ୍କୁ ସମସ୍ତେ ଘୃଣା କରିବେ ନାହିଁ ! କହିବେ ରମାବଲ୍ଲଭ ଭାଇଟା ଗଜମୂର୍ଖ....

ବଂଶୀ - ପାଠ ପଢ଼ିଲେ ଆଉ କହିବେ ନାହିଁ ?

ଆଚାର୍ଯ୍ୟ - କେମିତି କହିବେ ? ତାକୁ ଆହୁରି ସମସ୍ତେ ପ୍ରଶଂସା କରିବେ ।

ବଂଶୀ - ହଁ ମୁଁ ପାଠ ପଢ଼ିବି । ନନା, ତୁମେ ଯାଅ...ମୋ ଲେଖନୀ ଆଉ ତାଳପତ୍ର ଦେଇ ଯାଅ ।

ଆଚାର୍ଯ୍ୟ - ହଁ, ଯାକୁଇ କହନ୍ତି ଯେ ସୁନାପିଲା । ତୁ ଯା'ରେ ରମା ! ସେ ଏଇଥର ଟିକିଏ ବାଗକୁ ଆସିଛି । ହଟନାଗର କ'ଣ କରୁଛନ୍ତି କିଜାଣି ? ବସରେ ବଇଂଶୀ ସେଇଠି ବସ...ହଁ ଯେଉଁ ଫଳା ଶିଖେଇ ଦେଇଥିଲି ସେତକ ଲେଖି ଆଣିଲୁ ! କିରେ ତୁମେ ସବୁ ବନ୍ଦ ହୋଇଗଲ କାହିଁକି ? ବେଳତ ହେଲାଣି ଆଉ ଦି'ଘଡ଼ିପରେ ଯିବ। ସେତକ ମୁଖସ୍ଥ କରି ଦେଇଛ ? (ଇତିମଧ୍ୟରେ ବଂଶୀବଲ୍ଲଭ ନିଜର ପଢ଼ା ଛାଡ଼ିଦେଇ ଜଣେ ପିଲା ସହିତ ଦୁଷ୍ଟାମି ଆରମ୍ଭ କରିଦେଇଛି। ଶେଷକୁ ତାକୁ ଦୁଇ ବିଧା କଷିଦେଇ ତା' ପୋଥି ନେଇ ଦଉଡ଼ି ପଳେଇଲା । ପିଲାଟି କାନ୍ଦି ଉଠିଲା ।)

ଆଚାର୍ଯ୍ୟ - କିରେ ଦାମ, କାନ୍ଦିଲୁ କାହିଁକି...ତୋ'ର କ'ଣ ହେଲା....ଆରେ ବଇଁଶୀ କୁଆଡ଼େ ଗଲା ?

ଦାମ - ଆଚାର୍ଯ୍ୟ ଆପଣେ, ମୋତେ ମାରି ମୋ ପୋଥି ନେଇଗଲା ଉଁ...ଉଁ...(କାନ୍ଦିଲା ।)

ଆଚାର୍ଯ୍ୟ - ଆରେ, ଅଧମ ଏପରି କାଣ୍ଡ କରି ସାରିଲାଣି ? ଆଚ୍ଛା ହଉ ହଉ ତୁ କାନ୍ଦନା । ତୋ'ରି ଆଗରେ କାଲି ତାକୁ ମାରି ଚିରଦିନ ପାଇଁ ଚତୁଷ୍ପାଠୀ ଆସିବା ବନ୍ଦ କରି ଦେବି । ପିଲାଗୁଡ଼ାକୁ ଖରାପ କରି ଦେଲା ଅଭାଗା ମୂର୍ଖଟା । ହଉ, ଯାଅରେ ପିଲେ ଯାଅ...ସମସ୍ତେ ବେଳଓଳି ସହଜ ସହଜ ଚାଲି ଆସିବ ଭାଗବତ ପୋଥି ନେଇଁ....ଏଁ....?

ସମସ୍ତେ - (ଖୁସିରେ) ହଁ.....ଆଚାର୍ଯ୍ୟେ....ପ୍ରାଣାମ.....(ଚାଲିଗଲେ ।)

ଆଚାର୍ଯ୍ୟ - (ସ୍ୱଗତଃ) ଭଗବାନଙ୍କର ଇଚ୍ଛା ଅନ୍ୟ ପ୍ରକାର । ଆମେ ଯେତେ ଚେଷ୍ଟା କଲେ କ'ଣ ବା କରି ପାରିବୁଁ । ଏବେ ଜଣାଗଲା



ଏଜନ୍ମରେ ଆଉ ତା'ର ପାଠ ହେବ ନାହିଁ....(ଚାଲିଗଲେ । ପରଦା ପଡ଼ିଗଲା ।)

## (୩)

(ହଟନାଗରଙ୍କ ଗୃହ । ପୁରୁଣା କାଳିଆ ଢଙ୍ଗରେ ତିଆରି । କାନ୍ଥରେ ଝରକା ପରିବର୍ତ୍ତେ ଗବାକ୍ଷ ଦେଖାଯାଏ । ବିଭିନ୍ନ ପ୍ରକାର ଝୋଟି ଦିଆଯାଇଥିବାର ଦୃଶ୍ୟ । ଧାନ କେଣ୍ଡାମାନ ସ୍ଥାନେ ସ୍ଥାନେ ଓହଳିଛି । ଘରର ଗୋଟିଏ କୋଣରେ ପାନଭାଙ୍ଗିବା ସରଞ୍ଜାମ ଥୁଆଯାଇଛି । ତା'ର ପାଖ କାନ୍ଥରେ ଚୂନ ଛିଟା — ସମୟ ସକାଳର କିଛି ସମୟ ପରେ । ଘରକୁ ଆଲୁଅ ସେପରି ଯଥେଷ୍ଟ ଆସୁନାହିଁ । ସୀତାମଣି ଘର ଓଳାଉଥିଲେ । ବୟସ ପ୍ରାୟ ପଚିଶ କି ଛବିଶ । ଲୁଗାପିନ୍ଧା ପୁରୁଣା କାଳର । ନାନା ପ୍ରକାର ରୂପା ଅଳଙ୍କାରରେ ଶରୀରପୂର୍ଣ୍ଣ । ବାହାରୁ ସଦ୍ୟ ସ୍ନାତ ହୋଇ ହଟନାଗର ଲୋଟାଏ ଜଳ ନେଇ ମନ୍ତ୍ର ପଢୁ ପଢୁ ପ୍ରବେଶ କଲେ ।)

ହଟନାଗର - ...''ଗୋପୀଙ୍କ ବାଞ୍ଛା ପୂର୍ଣ୍ଣ କରି, ମଥୁରାଗଲେ ନରହରି ।
କଂସ ଦେଖିଣ ତାଙ୍କୁ ଡୋଳେ, ପ୍ରାଣ ଛାଡ଼ିଲା ତତ କାଳେ ।
ଦ୍ୱାରିକା ପୁରେ ଭାବଗ୍ରାହୀ, ଛପନ କୋଟି ଯେ ଭିଆଇ ।
ତହିଁରେ....

ସୀତା - ହାଇଲୋ ମର ଧ-ର-ମ ! (ହଟନାଗର ଟିକିଏ ଚମକିପଡ଼ି ପଛକୁ ଘୁଞ୍ଚିଗଲେ । ସୀତାମଣି ଝାଡ଼ୁଣୀଟା ଫୋପାଡ଼ି ଦେଇ) ଆଚ୍ଛା ତମ କଥାଟା କ'ଣ ଶୁଣେ ?

ହଟନାଗର - ଆଃ....କି ବେଳରେ ଆଜି ରାତିଟା ପାହିଥିଲା କେଜାଣି, ସକାଳୁ ଏ ପର୍ବ ଆରମ୍ଭ ହେଲାଣି...ଓଃ ମୁଁ ତ ଡରିଯାଇଥିଲି ପ୍ରଥମ ବାକ୍ୟଟିକୁ ଶୁଣି ।

ହଟନାଗର - କ'ଣ କଥା ନାହିଁ ବାର୍ତ୍ତା ନାହିଁ ''ଧରମ'', ''ଛଟକ'' ଏସବୁ ଶବ୍ଦର ପ୍ରୟୋଗ କାହିଁକି ଦେବୀ ।

ସୀତା - ମୁଁ ଆମ ଘରକୁ ଚାଲିଯିବି ଆଜି....

ହଟନାଗର - ଦେବୀଙ୍କର କ'ଣ ଅଭାବ ହେଇଗଲା ଯେ, ସକାଳଟାରୁ ବାପଘରକୁ ଯିବା ପାଇଁ ତିଆର ।

ସୀତା - ନାଁ କାହିଁକି ଯା'ନ୍ତି ? ଏଠି ଉପାସଭୁକେ ପଡ଼ି ରହିଥା'ନ୍ତି ?

ହଟନାଗର - (ଚମକିପଡ଼ି) ଏଁ...ଭୁକ ଉପାସ ।....କିଏ ରହୁଛି ? ତୁମେନା ? ହାଇରେ କପାଳ ! ଯୁଗ ଓଲଟିଲା କି ଆଉ ? ତୁମେ ଏଠି ଉପାସ ରହିଛ ? ଏକଥା ତୁମ ମୁହଁକୁ କିମିତି ଆସିଲା ସୀତା ! ଯଦି କେହି ଶୁଣିନେଇଥିବ ବାହାରୁ, ମୁଁ ଆଉ ଗାଁରେ ମୁଣ୍ଡ ଟେକି ଚାଲିପାରିବି ତ ? ଭବାନୀ ମିଶ୍ର ପୁଅ ତା ସ୍ତ୍ରୀକୁ ଉପାସ ରଖଉଛି....ଓଃ ଭଗବାନ୍....! (କାନରେ ହାତ ଦେଇ ଦେଲେ । ନିର୍ଜୀବ ଭାବରେ ନିଃଶ୍ୱାସ ଛାଡ଼ି ଠିଆ ହୋଇ ରହିଲେ ।)

ସୀତା - କ'ଣ ମ' ଏମିତି ହଉଛ ? ଘର କରି ଯଦି କୁଣିଆ ମଇତ୍ରୁ ଚର୍ଚ୍ଚା କରି ନ ପାରିଲେ, ତେବେ ସେ ଘର କରି ଲାଭ କ'ଣ ?

ହଟନାଗର - ସକାଳୁ ପୁଣି କୁଣିଆ ଆସି ପହଞ୍ଚିଲେଣି ନା କ'ଣ ?

ସୀତା - କ'ଣ ଆସନ୍ତେ ନାହିଁ ?

ହଟନାଗର - ମୁଁ କ'ଣ ମନା କରୁଛି ?...ତେବେ ଏଇ ସକାଳଟାରୁ...କହନ୍ତି ନାହିଁ....ସକାଳୁ କୁଣିଆ କୁଣିଆ ନୁହେଁ....

ସୀତା - ଥାଉ ଥାଉ ସେ ଢଗ....ବିର ଆସି ପହଞ୍ଚିଛି । ତା' ପାଇଁ କ'ଣ ଜଳଖିଆ ଆଣିବ ଯାଅ । ଘରେ କିଛି ନାହିଁ....



ସୀତା - ଛମା ଜାଣ କି ବିରଞ୍ଚି କି?

ହଟନାଗର - ଓ...ବିରଞ୍ଚି । ଏତେ ସକାଳୁ ବନ୍ଧୁବରଙ୍କର ଆଗମନ କାହିଁକି ? କ'ଣ ଇମିତି ଜରୁରୀ କାମ ପଡ଼ିଲା ?

ସୀତା - କ'ଣ ଆସନ୍ତା ନାହିଁକି ?

ହଟନାଗର - ଓଃ....ମୁଁ କ'ଣ ମନା କରୁଛି ? ତେବେ କ'ଣ କିଛି ଜରୁରୀ ?

ସୀତା - ମୋତେ ନେବା ପାଇଁ ।

ହଟନାଗର - କି ?

ସୀତା - କ'ଣ ଯା'ନ୍ତେ ନାହିଁକି ?

ହଟନାଗର - ଆରେ ବାବା ! ଇମିତିକା କାହିଁକି ହଉଛ ତୁମେ କଥା ପଦକେ ଧମକ....ଟିକିଏ କଥାଟାକୁ ବାଗେଇ କରି କହିଲେ ହବନାହିଁ ?

ସୀତା - ତା'ର ପରା ବା'ଘର ହେଉଛି ମାସ ବାର ଦିନେ ।

ହଟନାଗର - ଯା'ହେଉ କପାଳଟା ତା'ହେଲେ ଭଲ । ମୁଁ କହୁଥିଲି କ'ଣ ଖରାପ ? ଆଚ୍ଛା ଗଲେ କୁଆଡ଼େ ବନ୍ଧୁ ।

ସୀତା - ସେ ଯାଇଛି ମନ୍ଦିରକୁ । ତମେ ଗଲ ତା'ପାଇଁ କ'ଣ ଆଣିବ, ପିଲାଟା ରାତି ପାହାନ୍ତାରୁ ଆସିଛି । ଭୋକେଇ ବଣି ।

ହଟନାଗର - ହଉ ଟିକିଏ ସେବାଟା ସାରି ଦିଏଁ । ଯିବେତ.....

ସୀତା - ପିଲାଟା କିଛି ଖାଇ ନାହିଁ । ତାକୁ ଖାଇବାକୁ ଦେବା କାମଟା ଆଗ ନା ତୁମ ପୂଜା କାମଟା ଆଗ ?

ହଟନାଗର - ନାଃ ! ସେ କାମଟା ଆଗ...ହେଁଃ ! ମୁଁ କହୁଛି ପରା ତୁମରି ପାଇଁ ମୋର ସବୁଗଲା । ହଉ, କ'ଣ କରିବି ? (ସୀତାମଣି ମୁହଁ ମୋଡ଼ି

ଦେଇ ଚାଲିଗଲେ । ହଟନାଗର ଲୁଗା ରଖିଦେଇ ଯିବାକୁ ବାହାରିଛନ୍ତି ଆସି ପହଞ୍ଚିଲେ ବିରଞ୍ଚି । ବୟସ ୨୦/୨୧ ହେବ । ପୋଷାକ - ଖଣ୍ଡେ ଖଦି ଓ ଖଣ୍ଡେ ଚାଦର)

ବିରଞ୍ଚି - ନମସ୍କାର ହଟ ନନା....!

ହଟ - କିଏ ବିରଞ୍ଚି ! ଆସି ଗଲୁଣି...ହଉ ଚଞ୍ଚଳ ଚଞ୍ଚଳ ହାତକୁ ଦିହାତ ହଉ । କ'ଣ ଘରେ ଆଉ ସବୁ ଭଲତ' ?

ବିରଞ୍ଚି - ହଁ....ସବୁ ଭଲ...ମୁଁ ଆଜି ନାନୀକୁ ନେଇ ଯିବି.....କ'ଣ କହୁଛ ?

ହଟନାଗର - କହିବି କ'ଣ ? ତୋ ନାନୀକୁ ତୁ ନେଇଯିବୁ । ମୁଁ କହିବି କ'ଣ ? (ସୀତାମଣି ପହଞ୍ଚିଲେ) ।

ସୀତା - କ'ଣ ଯାଇନ ସେତିକି ବେଳୁ ? କଥାଟା ପରେ ପଚାରିଥିଲେ...

ହଟନାଗର - ମୁଁ ଯାଉଚି ରେ ବିର ! ତୁ ବସିଥା । ଆସେଁ କଥାବାର୍ତ୍ତା ହେବା ।

ବିରଞ୍ଚି - କୁଆଡ଼େ ଯାଉଚ କି....(ସୀତାମଣି ଅନ୍ୟ କାମରେ ଗଲେ ।)

ହଟନାଗର - ତୋ' ପାଇଁ ଜଳଖିଆ ଆଣିବାକୁ ।

ବିରଞ୍ଚି - ନାଁ-ନାଁ ମୁଁ ଜଳଖିଆ ଖାଇ ଆସିଛି । ମୋ ପାଇଁ ତୁମେ ଆଉ ଯାଅନାହିଁ । ଆମେ ତ ସହଳ ସହଳ ବାହାରି ଯିବୁଁ । ନାନୀ, ଟିକିଏ ଶୀଘ୍ର କାମ ସାରିଲେ ହେଲା ।

ହଟନାଗର - ଆଜି ଯିବନା କ'ଣ ?

ବିରଞ୍ଚି - ଆଜି ନଗଲେ ହବନା ? ଆଉ ଯମା ଚାରିଟା ଦିନ....ତୁମେତ ସେଦିନ ଯିବ । ଗୁଆ ଦେଇ ଦେଇଛି ।

ହଟନାଗର - ହଉ ଯା' କରୁଛ କର । ମୁଁ ତ ଏଇ ଗାଧୋଇ କି ଫେରୁଛି ଯେ ସେବା ବି ଟିକିଏ କରିପାରି ନାହିଁ । ହଁ ମୁଁ ସାରୁଛି ତୁ ଟିକିଏ ବସ୍....

ବିରଞ୍ଚି - ଏ ହଟନନା, (ଟିକିଏ ଚାପାସ୍ୱରରେ) ଗୋଟାଏ କଥା ପଚାରିବି କହିବ ତ ?

ହଟନାଗର - ଜାଣିଥିଲେ ସିନା କହିବି ?

ବିରଞ୍ଚି - ତୁମ ସାହି ଗୋସ୍ୱାମୀ ଘର ବଡ଼ପୁଅଟି କେମିତିକା ଲୋକ ।

ହଟନାଗର - କିଏ, ରମାବଲ୍ଲଭ ?

ବିରଞ୍ଚି - ହଁ-ହଁ ସେଇ ରମାବଲ୍ଲଭ । ତା'ପାଇଁ ପରା ଆମ ସାହିରେ ସମ୍ବନ୍ଧ ପଡ଼ିଛି...ତୁମେ ତ ଜାଣିଥିବ, ଆମ ସାହି ଦୀନବନ୍ଧୁ ଗୋସ୍ୱାମୀଙ୍କ ଘର...ସେଇ ଯେଉଁ ଜମିଦାର ଘର ନୁହେଁ....ଦାଣ୍ଡ ଆଗରେ ଗୋପାଳଜୀ ମନ୍ଦିର ...ଚଉପାଢୀ ଅଛି...ସେଇମ କୋଠାଘର....

ହଟନାଗର - ହଁ, ହଁ ମୁଁ ଦେଖିଛି ? ସେଇ ଘରେ ତା'ହେଲେ ସମ୍ବନ୍ଧ ପଡ଼ିଛି ?

ବିରଞ୍ଚି - ହଁ ପରା ! ତୁମେ ଜାଣିନ ସାହିଲୋକ ହୋଇବି ?

ହଟନାଗର - ନାଇଁରେ ଭାଇ, ଆମେ ହେଲୁ କାମିକା ଲୋକ...ବଡ଼ଲୋକର ବଡ଼ ବା', ସେଥିରେ ପୁଣି ମହାପଣ୍ଡିତ....

ବିରଞ୍ଚି - ମହାପଣ୍ଡିତ ?

ହଟନାଗର - ବାଦଶାଙ୍କ ଠାରୁ 'ବିଦ୍ୟାସାଗର' ଉପାଧି ପାଇଛି ଟି !

ବିରଞ୍ଚି - ସତେ !

ହଟନାଗର - ତା' ସାନଭାଇ ପୁଣି 'ନ୍ୟାୟରତ୍ନ' ଉପାଧି ପାଇଛି । ଦୁହିଁଙ୍କୁ ହୁହେଁ ରୂପ, ଗୁଣ ସବୁଥିରେ ବଳି । ଏକା ବଇଁଶିଟି ସିନା ବାଇଜା —

ବିରଞ୍ଚି - ବାଃ, ତା' ହେଲେ ସୁମତିର କପାଳଟେ ଏକା — ମୋ ଠାରୁ ବୟସରେ ଦି' ବର୍ଷ ସାନହେବ । ହେଲେ କ'ଣ ହେବ ହଟନନା, ସବୁଶାସ୍ତ୍ରରେ ତା'ର ଦଖଲ ଅଛି । ନଉପାଢ଼ୀରେ ତା' ସମାନ ଝିଅ

ରୂପରେ ତ ଉର୍ବଶୀକୁ ବି ଜିଣିଯିବ ।....କଥା କ'ଣ କି ସୁମତିର ମା, ମୁଁ ଆସିବା ବେଳକୁ କହିଥିଲା ଟିକିଏ ତାକୁ ଦେଖିଯିବା ପାଇଁ...

ହଟନାଗର - ହଉ, କାମଦାମ ସାର୍ ଯିବା । ବୁଲି ଆସିବା ଟିକିଏ ।

ସୀତାମଣି - (ଭିତରୁ) କ'ଣ ଗପସପ ଚାଲିଥିବ ସେମିତି !

ହଟନାଗର - ଯା'ରେ ବିର, ନାନୀ ପାଖକୁ ଯା । ମୁଁ ଟିକିଏ କାମସାରେଁ । (ବିର ଚାଲିଗଲା । ପରଦା ପଡ଼ିଗଲା ।)

## (୪)

(ଗାଁ ତୋଟା — ଖରାବେଳ — ବଂଶୀବଲ୍ଲଭ ଆଉ କେତୋଟି ପିଲା ବାଗୁଡ଼ି ଖେଳୁଛନ୍ତି ।)

ବଂଶୀ - ଦେବେ ରାମା, ଦେ ରା'ଦେ । ହଁ...ଦଉଡ଼ିଯା...

ରାମା - (ରା ନେଇ ଦଉଡ଼ିଗଲା । ଖେଳର ନିୟମ ଅନୁସାରେ ଅନ୍ୟପକ୍ଷର ଜଣେ ଖେଳାଳୀକୁ ମାରିଦେଇ ଆସିଲା ।)

ବଂଶୀ - ସାବାସ୍ ରାମା...ଠିକ୍ ମରିଚି । କିବେ ହରି, ତୁମ ପାଖରୁ ଆସୁନ । ଡେରି କରୁଛ କାହିଁକି ? ଗଲେ ପୁଣି ଖାଇବା ନା...ଏ ଖରା ପୁଣି ଯିମିତି ହଉଚି....

(ଏହି ସମୟରେ ଅନ୍ୟଦଳରୁ ଗୋଟିଏ ପିଲା ଆସି ଖେଳିଲା । ଏହିପରି ଭାବରେ କିଛି ସମୟ ଖେଳଚାଲିଲା । ଦଳେ ଛୁଆ ସେହି ବାଟେ ପୋଥି ଲେଖନୀ ଧରି ଚଟୁଶାଳୀରୁ ଫେରୁଥିଲେ । ତାଙ୍କୁ ବଂଶୀବଲ୍ଲଭ ଡାକିଲେ ।)



ପାଠ ପଢ଼ା ହେଇଗଲା ? ଆସବେ ଖେଳିବା । ଯାଉଚ କୁଆଡ଼େ !

ଦାମ - ନାଇଁ ତୁ ମୋତେ ମାରିଲୁ, ମୁଁ ତୋ ସାଙ୍ଗରେ ଖେଳିବି ନାହିଁ ।

ବଂଶୀ - ବେ ଯଦି ଭଲ ଦଶା ଅଛି ତ ଖେଳିବୁ ଆ — ନହେଲେ ଜାଣିଥା...ଏକିଟିଆବେଳେ ଦେଇଥିବି ଯେ କୁଟି....

ରାମ - ହଁ...ଭାରି ମାରିଲାବାଲା । ମାର୍ନି କିମିତି ମାରୁଛୁ ମୋ ଭାଇକୁ । ତୋ ହାତ ଭାଙ୍ଗି ଦେବିନାହିଁ ?

ବଂଶୀ - କିବେ ରାମ, ତୋ'ରତ କ'ଣ ଭାରି ବହପ ହେଇଗଲାଣି ବେ ! ମୋ ହାତ ଭାଙ୍ଗି ଦେବୁ ! ସତେ ନା...ତୋ'ର ଏତେ ବଳ ! ଆ'ନି ଦେଖିବା କିମିତି ଭାଇ ସୁଆଗିଆ ହେଇଚୁ....(ବଂଶୀବଲ୍ଲଭ ପାଇକଛା ମାରିଲେ । ତା' ଦେଖି ଗୋକୁଳି ଆଉ ଗୋପାଳିଆ ଦଉଡ଼ିବାକୁ ଆରମ୍ଭ କରୁଥିଲେ । ତାଂକୁ ଦେଖି ବଂଶୀବଲ୍ଲଭ ଡାକିଲେ) ଗୋପାଳିଆ, ଗୋକୁଳି, ପିଠି ଗଲୁ କରୁଚି କିରେ ! କ'ଣ ଖସିଯିବାକୁ ଆରମ୍ଭ କଲଣି....ଆସ....ଆସ ଏଇଠି ଠିଆ ହୁଅ । (ପିଲା ଦୁଇଟି ଆସି ଠିଆ ହେଲେ ।) କ'ଣ ତୁମେ ବି ଖେଳିବ ନାହିଁ ?

ଗୋପାଳିଆ - ଆମକୁ ଆଚାର୍ଯ୍ୟେ ମନା କରିଥିଲେ....(ଥରିଲା ସ୍ୱର ।)

ବଂଶୀ - ବେ, ଫେର୍ କହିଲା ଆଚାର୍ଯ୍ୟ; (ପିଲା ଦୁଇଟି ଚମକି ପଡ଼ିଲେ) ମୁଁ ପଚାରୁଛି ଖେଳିବ କି ନାହିଁ....ହଁ କି ନା ତ କହିଦେବ । ଏତେ ବେଳି କାହିଁକି ?

ଗୋକୁଳି - (ଡରରେ) ହଁ — ଖେଳିବୁଁ ।

ବଂଶୀ - ବେଶ୍ ସୁନା ପିଲା । ବସ ଏଇଠି । (ପିଲା ଦୁଇଟି ବସିଗଲେ । ବଂଶୀ, ରାମ ଏବଂ ହରି ପ୍ରଭୃତିଙ୍କୁ ଚାହିଁ) ତୁମେ ସବୁ ବସବେ ! (ସେମାନେ ସବୁ ବସିଗଲେ ।)

ରାମ - କି ତୋତେ ଏତେ ଡରିବେ କାହିଁକି ?

ଦାମ - ଭାରି ବାହାଣିଆ ଦେଖଉଛି....ଇସ୍ ! ଆସବେ ଗୋକୁଳି ପଳେଇବା । ବାପା ଗାଳି ଦବ ।

ବଂଶୀ - (ଚାପୁଡେ ପକେଇଲା ଦାମକୁ । ଦାମ କାନ୍ଦିଉଠିଲା ।)

ରାମ - କିବେ କାହିଁକି ମାରିଲୁ ମୋ ଭାଇକି ?

ବଂଶୀ - ଅଲବତ୍ ମାରିବି । ଫେର୍ ହେଇ ମାରିଲି । (ଆହୁରି ଚାପୁଡ଼େ ପକେଇଲା । ଦାମ କାନ୍ଦୁଚି ।)

ରାମ - ଆଉ ଥରେ ମାର୍‌ନି ଦେଖିବା !

ବଂଶୀ - (ପୁଣି ମାରିଲା — ଏଇ ଥର ଦାମ ଜୋର୍‌ରେ କାନ୍ଦିଲା ।)

ରାମ - ଆଉ ଯଦି ମାରିବୁ ନା ତୋତେ ଅଣ୍ଡା କରିଦେବି କହୁଚି !

ବଂଶୀ - ତ'ପରି ଶହେଟା ହେଲେ ପାରିବେ ନା ? ତୁ ତ ତୁ — ଏଇ ଦେଖୁ ପୁଣି ମାରୁଚି (ପୁଣି ମାରିଲା)

ରାମ - ତେ · ତ'ର ତ ଭାରି ସାହାସ ।

ବଂଶୀ - ତତେ ଦେଖ୍ ହେଁଇ ମାରିଲି.....(ମାରିଲା ଚାପୁଡ଼େ ।)

ରାମ - ଆଉଥରେ ମାର୍‌ନି ?

ବଂଶୀ - (ପୁଣି ଚାପୁଡ଼େ ।)

ରାମ - ଦି'ଥର ହେଲା । ତିନିଥର ଯଦି ମାରିବୁ ବଇଁଶୀ, ଯା କହୁଚି ମୁଁ ରାଗିଯିବି....

ବଂଶୀ - ରାଗିଯାଇ ଚୋପାଟା କରିବୁ । ହେଇବେ ପୁଣି ମାରିଲି । (ଚାପୁଡ଼େ ମାରିବାରୁ ରାମ ରାଗି ଯାଇ ବଂଶୀକୁ ମାରିଲା । ଏହିପରି ଭାବେ ଦୁହେଁ ଗଡ଼ାଗଡ଼ି ଲାଗିଲେ । ଦାମ କାନ୍ଦୁଥାଏ ସେଇମିତି । ବସିଥିବା ଛୁଆଗୁଡ଼ାକ ଉଠିପଡ଼ି ତାଳିଚାପୁଡ଼ା ମାରିଲେ ।)

ଗୋକୁଳି+ଗୋପାଳିଆ -ସାବାସ୍ ରାମ । ହଁ ଗଡେଇଦେ...

ହରି+ରାମ - ବଇଁଶୀ...ହଁ ମାଡ଼ିବସ୍...ମାଡ଼ିବସ୍...ସାବାସ୍ । (ତାଳିଚାପୁଡ଼ା ମାରୁଥାନ୍ତି । ହସୁଥା'ନ୍ତି । ବଂଶୀ ରାମକୁ ଲେଉଟାଇ ତା ଉପରେ ବସିପଡ଼ିଲା । ଏହି ସମୟରେ ପଛ ଆଡୁ ପ୍ରବେଶ କଲେ ଆଚାର୍ଯ୍ୟ....ପ୍ରଥମେ ଦେଖିଲେ ଗୋକୁଳି ଓ ଗୋପାଳିଆ —)

ଗୋପା+ଗୋକୁଳି -ରେ, ଆଚାର୍ଯ୍ୟେ ଆସିଲେଣିରେ...(ଦୁହେଁ ଦୌଡ଼ି ପଳେଇଲେ । ତା'ପରେ ହରି ଓ ରାମ ହେରିକା ପଳେଇଲେ । ବଂଶୀ ଯେମିତି ଶୁଣିଚି ସେମିତି ଉଠି ଛୁ...ରାମ ପଡ଼ି କାନ୍ଦୁଥାଏ । ଦାମ ବି ଧକଉଥାଏ । ଆଚାର୍ଯ୍ୟ ଡାକିଲେ ପଛରୁ — )

ଆଚାର୍ଯ୍ୟ - ବଇଁଶୀ...ରେ ବଇଁଶୀ ।... (ବଇଁଶୀ ଫେରିଲା ନାହିଁ ।)ଅଧମ, ମୂର୍ଖ ଏପରି ଅଧଃପତନ ହେଲାଣି ତୋ'ର ? ଆଚ୍ଛା ଟିକିଏ ଥୟ ଧର ଦେଖିବୁ ଆଚାର୍ଯ୍ୟ ଶୁକଦେବର ଗୁଣ !

ଦାମ - (ଧକଉ ଧକଉ) ଆମେ ଚଟ୍ଟଶାଠାରୁ ଫେରୁଥିଲୁ । ଆମକୁ ଖେଳିବା ପାଇଁ ଡାକିଲା । ଆମେ ମନାକଲାରୁ ମୋତେ ଆଗ ଚାରି ପାଞ୍ଚ ଚାପୁଡ଼ା ମାରିଲା । ତା'ପରେ ଭାଇ ଗାଳିଦେବାରୁ ଦୁହେଁ ମରାମରି ହେଲେ ।

ଆଚାର୍ଯ୍ୟ - ହଉ...ଥୟଧର । ମୁଁ ଅଧମକୁ ଠିକ୍ କରିଦେବି । (ରାମ ଧୀରେ ଧୀରେ ଉଠି ଠିଆହେଲା ।) କିରେ ତୁ ସେ ଦୁଷ୍ଟ ପିଲା ସହିତ ଲାଗୁଥିଲୁ କାହିଁକି ? ତୋତେ ପରା ମୁଁ ମନା କରିଥିଲି ।

ନାହିଁ ଆଚାର୍ଯ୍ୟ ଆପଣେ ।

ଆଚାର୍ଯ୍ୟ - ଆଚ୍ଛା ହଉ ଚାଲଚାଲ । ମୁଁ ଯାଉଛି ତୁମ ସାଙ୍ଗରେ । (ଆଗରେ ପିଲା ଦୁଇଟି ଏବଂ ପଛରେ ଆଚାର୍ଯ୍ୟ ଗଲେ ।)

## (୫)

(ରମାବଲ୍ଲଭଙ୍କର ଗୃହ — ପୁରୁଣା କାଳର ଗଢ଼ଣ, ତଥାପି ଖାନ୍ଦାନୀର ଆଭାସ ମିଳେ। ଗୋଟିଏ ପାଖରୁ ପ୍ରବେଶ କଲେ ଆଚାର୍ଯ୍ୟ । ତାଙ୍କ ପଛେ ପଛେ ରାମ ଓ ଦାମ —)

ଆଚାର୍ଯ୍ୟ - ରମା ବଉ !...ରମା ବଉ, ଅଛନା ଘରେ ?

ସତ୍ୟବତୀ - (ଭିତରୁ) କ'ଣ କହୁଛନ୍ତି, ଆଚାର୍ଯ୍ୟେ ।

ଆଚାର୍ଯ୍ୟ - ଆସିଲ ଟିକିଏ ଏଆଡକୁ...ତୁମ ବଇଁଶୀଆର ଗୁଣ ଦେଖିବ— (ସତ୍ୟବତୀ ଆସିଲେ । ବୟସ ପଚାଶ ଟପିଛି । ପୁରୁଣା କାଳର ବିଧବା ବେଶ) ଦେଖିଲ ଟିକିଏ ଏପିଲା ଦୁଇଟାଙ୍କୁ ମାରି କ'ଣ କରିଛି ?

(ରାମର ପିଠି ଏବଂ ଦାମର ଗାଲକୁ ଦେଖେଇ ଦେଲେ ।)

ସତ୍ୟବତୀ - କିଏ ବଇଁଶୀ ମାରିଛି ନା ?

ଦାମ - ହଁ...ଆମେ ଚତୁଷ୍ପାଠୀରୁ ଆସୁଥିଲୁଁ ଆମକୁ ଖେଳିବା ପାଇଁ ଡାକିଲା । ଆମେ ନଗଲାରୁ ଆମକୁ ମାରି ଏପରି କରିଛି । ମୋତେ ଆଗ ମାରିଲା । ତା'ପରେ ଭାଇ ତାକୁ ଗାଳିଦବାରୁ ଦୁହେଁ ମରାମରି ଲାଗିଲେ । ଆଚାର୍ଯ୍ୟେ ଆସିଗଲେ ବୋଲି...ନ ହେଲେ...

ଆଚାର୍ଯ୍ୟ - ଆଜି କ'ଣ ଆଉ ଛୁଆ ଦି'ଟାଙ୍କର ଅବସ୍ଥା ଥା'ନ୍ତା ? ଯଦି ଯାଙ୍କ ବାପମା ଦେଖନ୍ତି ତେବେ ଏକ ମହାକଳିର ସୃଷ୍ଟି ହେବ ।



ସାରିଦେଲା । ତାକୁ କି କ'ଣ ଆଉ ପାରିହେବ ନାହିଁ ? ଦିନକୁ ଦିନ ତା'ର ବଦମାସି, ଦୁଷ୍ଟାମି ବଢ଼ିଚାଲିଛି ବରଂ, କମୁନାହିଁ । ତୁମେ ଆଉ ଘରକୁ ଯାଅ ନାହିଁରେ ବାପା ! (ଛୁଆ ଦୁ'ଟିଙ୍କୁ ଚାହିଁ) ଗାଧେଇ ଆସି ଏଇଠି ଖାଇ ଶୋଇପଡ଼ । ଖରାହେଲାଣି । ବାପା — ପଚାରିଲେ କହିଦେବ — ବଇଁଶୀ ଘରେ ଛୁଆମେଳା ହେଉଥିଲା ଯେ ଆମକୁ ଖାଇବା ପାଇଁ ଡାକିନେଲା । ଯାଅ...ଗାଧେଇ ଆସି ଖାଇବ । (ପିଲା ଦି'ଟି ଖୁସିହୋଇ ପରସ୍ପରକୁ ଚାହିଁଲେ । ତା'ପରେ ଘର ଆଡକୁ ଚାଲିଗଲେ । ସତ୍ୟବତୀ ଦୀର୍ଘନିଃଶ୍ୱାସ ପକାଇଲେ ।)

ଆଚାର୍ଯ୍ୟ - ଆଚ୍ଛା ରମା ବୋଉ...(ସତ୍ୟବତୀ ତାଙ୍କୁ ଆଣି ଆସନ ଦେଲେ । ଆଚାର୍ଯ୍ୟେ ବସିଲା ପରେ କହିଲେ —) ମୋ କଥା ମାନିବତ । ମୁଁ ଗୋଟିଏ କଥା କହିବି...ବଇଁଶୀଟାର ଅଧଃପତନ ଦେଖି ମୁଁ ବଡ଼ ମର୍ମାହତ ହୋଇପଡ଼ିଛି । ତା' କଥା ଭାବିଭାବି ମୋତେ ନିଦ ନାହିଁ। କ'ଣ ହେଲା ? କେତେବଡ଼ ବଂଶରେ ଗୋଟାଏ କଳଙ୍କ ଲାଗିଗଲା....

ସତ୍ୟବତୀ - ବଇଁଶୀକୁ ଭଲବାଟକୁ ଆଣିବା ପାଇଁ ମୋତେ ଯା' କହିବେ ମୁଁ ତା' କରିବି ଆଚାର୍ଯ୍ୟେ...ମୁଁ ଆଉ ଏସବୁ ସହି ପାରିବି ନାହିଁ ।

ଆଚାର୍ଯ୍ୟ - ଆଗ ତୁମେ ରାଣ ପକାଅ । ତେବେ କହିବି ।

ସତ୍ୟବତୀ - ମୁଁ ନିୟମ କରିବି କ'ଣ ? ନିଶ୍ଚୟ କରି କହୁଛି ବଇଁଶୀର ମଙ୍ଗଳ ପାଇଁ ଯାହା କହିବେ ତାହା କରିବି ।

ଆଚାର୍ଯ୍ୟ - ବଇଁଶୀ ଆଜି ଯେତେବେଳେ ଖାଇବସିବ, ତା' ଭାତଥାଳିରେ ଟିକିଏ

ନାହିଁ ଆଚାର୍ଯ୍ୟ ଆପଣେ ।

ଆଚାର୍ଯ୍ୟ - ଆଛା ହଉ ଚାଲଚାଲ । ମୁଁ ଯାଉଛି ତୁମ ସାଙ୍ଗରେ । (ଆଗରେ ପିଲା ଦୁଇଟି ଏବଂ ପଛରେ ଆଚାର୍ଯ୍ୟ ଗଲେ ।)

## (୫)

(ରମାବଲ୍ଲଭଙ୍କର ଗୃହ — ପୁରୁଣା କାଳର ଗଢ଼ଣ, ତଥାପି ଖାନ୍ଦାନୀର ଆଭାସ ମିଳେ। ଗୋଟିଏ ପାଖରୁ ପ୍ରବେଶ କଲେ ଆଚାର୍ଯ୍ୟ । ତାଙ୍କ ପଛେ ପଛେ ରାମ ଓ ଦାମ —)

ଆଚାର୍ଯ୍ୟ - ରମା ବଉ !...ରମା ବଉ, ଅଛନା ଘରେ ?

ସତ୍ୟବତୀ - (ଭିତରୁ) କ'ଣ କହୁଛନ୍ତି, ଆଚାର୍ଯ୍ୟେ ।

ଆଚାର୍ଯ୍ୟ - ଆସିଲ ଟିକିଏ ଏଆଡକୁ...ତୁମ ବଇଁଶୀଆର ଗୁଣ ଦେଖିବ— (ସତ୍ୟବତୀ ଆସିଲେ । ବୟସ ପଚାଶ ଟପିଛି । ପୁରୁଣା କାଳର ବିଧବା ବେଶ) ଦେଖିଲ ଟିକିଏ ଏପିଲା ଦୁଇଟାଙ୍କୁ ମାରି କ'ଣ କରିଛି ?

(ରାମର ପିଠି ଏବଂ ଦାମର ଗାଲକୁ ଦେଖେଇ ଦେଲେ ।)

ସତ୍ୟବତୀ - କିଏ ବଇଁଶୀ ମାରିଛି ନା ?

ଦାମ - ହଁ...ଆମେ ଚତୁଷ୍ପାଠୀରୁ ଆସୁଥିଲୁଁ ଆମକୁ ଖେଳିବା ପାଇଁ ଡାକିଲା। ଆମେ ନଗଲାରୁ ଆମକୁ ମାରି ଏପରି କରିଛି । ମୋତେ ଆଗ ମାରିଲା । ତା'ପରେ ଭାଇ ତାକୁ ଗାଳିଦବାରୁ ଦୁହେଁ ମରାମରି ଲାଗିଲେ । ଆଚାର୍ଯ୍ୟେ ଆସିଗଲେ ବୋଲି...ନ ହେଲେ...

ଆଚାର୍ଯ୍ୟ - ଆଜି କ'ଣ ଆଉ ଛୁଆ ଦି'ଟାଙ୍କର ଅବସ୍ଥା ଥା'ନ୍ତା ? ଯଦି ଯାଙ୍କ ବାପମା ଦେଖନ୍ତି ତେବେ ଏକ ମହାକଳିର ସୃଷ୍ଟି ହେବ ।



ସାରିଦେଲା । ତାକୁ କି କ'ଣ ଆଉ ପାରିହେବ ନାହିଁ ? ଦିନକୁ ଦିନ ତା'ର ବଦମାସି, ଦୁଷ୍ଟାମି ବଢ଼ିଚାଲିଛି ବରଂ, କମୁନାହିଁ । ତୁମେ ଆଉ ଘରକୁ ଯାଅ ନାହିଁରେ ବାପା ! (ଛୁଆ ଦୁ'ଟିଙ୍କୁ ଚାହିଁ) ଗାଧେଇ ଆସି ଏଇଠି ଖାଇ ଶୋଇପଡ଼ । ଖରାହେଲାଣି । ବାପା — ପଚାରିଲେ କହିଦେବ — ବଇଁଶୀ ଘରେ ଛୁଆମେଳା ହେଉଥିଲା ଯେ ଆମକୁ ଖାଇବା ପାଇଁ ଡାକିନେଲା । ଯାଅ...ଗାଧେଇ ଆସି ଖାଇବ । (ପିଲା ଦି'ଟି ଖୁସିହୋଇ ପରସ୍ପରକୁ ଚାହିଁଲେ । ତା'ପରେ ଘର ଆଡକୁ ଚାଲିଗଲେ । ସତ୍ୟବତୀ ଦୀର୍ଘନିଃଶ୍ୱାସ ପକାଇଲେ ।)

ଆଚାର୍ଯ୍ୟ - ଆଛା ରମା ବୋଉ...(ସତ୍ୟବତୀ ତାଙ୍କୁ ଆଣି ଆସନ ଦେଲେ । ଆଚାର୍ଯ୍ୟେ ବସିଲା ପରେ କହିଲେ —) ମୋ କଥା ମାନିବତ । ମୁଁ ଗୋଟିଏ କଥା କହିବି...ବଇଁଶୀଟାର ଅଧଃପତନ ଦେଖି ମୁଁ ବଡ଼ ମର୍ମାହତ ହୋଇପଡ଼ିଛି । ତା' କଥା ଭାବିଭାବି ମୋତେ ନିଦ ନାହିଁ। କ'ଣ ହେଲା ? କେତେବଡ଼ ବଂଶରେ ଗୋଟାଏ କଳଙ୍କ ଲାଗିଗଲା....

ସତ୍ୟବତୀ - ବଇଁଶୀକୁ ଭଲବାଟକୁ ଆଣିବା ପାଇଁ ମୋତେ ଯା' କହିବେ ମୁଁ ତା' କରିବି ଆଚାର୍ଯ୍ୟେ...ମୁଁ ଆଉ ଏସବୁ ସହି ପାରିବି ନାହିଁ ।

ଆଚାର୍ଯ୍ୟ - ଆଗ ତୁମେ ରାଣ ପକାଅ । ତେବେ କହିବି ।

ସତ୍ୟବତୀ - ମୁଁ ନିୟମ କରିବି କ'ଣ ? ନିଶ୍ଚୟ କରି କହୁଛି ବଇଁଶୀର ମଙ୍ଗଳ ପାଇଁ ଯାହା କହିବେ ତାହା କରିବି ।

ଆଚାର୍ଯ୍ୟ - ବଇଁଶୀ ଆଜି ଯେତେବେଳେ ଖାଇବସିବ, ତା' ଭାତଥାଳିରେ ଟିକିଏ

ପାଉଁଶ ଗୁଞ୍ଜିଦେବ । ଯେପରି ସେ ଦେଖି ପାରେ । (ସତ୍ୟବତୀଙ୍କ ଆଖି କପାଳକୁ ଉଠିଗଲା । ତାଙ୍କ ମୁହଁରୁ କଥା ବାହାରିଲା ନାହିଁ ।) ଏପରି ଅଧୈର୍ଯ୍ୟ ହେଲେ ଚଳିବ ନାହିଁ ରମାବୋଉ, ପୁଅକୁ ମଣିଷ କରିବାକୁ ହେଲେ ଯାଠୁଁ ଆହୁରି କଠୋର କାମ କରିବାକୁ ହେବ । ଏତ ଗୋଟାଏ ତୁଚ୍ଛ କାମ, ହଉ ମୁଁ ଯାଉଛି...ହେଲେ ମୋ କଥା ଭୁଲିବ ନାହିଁ ଯେମିତି...ସବୁ ଠିକ୍ ହେଇଯିବ ଆପେ ଆପେ । ତା'ପରେ ଦେଖିବ ଆଚାର୍ଯ୍ୟ ଶୁକଦେବର ଗୁଣ...(ଯାଉ ଯାଉ କହିଲେ । ସତ୍ୟବତୀ ନିର୍ବାକ ଭାବରେ ଆଚାର୍ଯ୍ୟଙ୍କ ଚାଲିଗଲା ବାଟକୁ ଚାହିଁ ରହିଥାନ୍ତି । କିଛି କ୍ଷଣ ପରେ ରାମ ଓ ଦାମ ଆସି 'ମାଉସୀ' ବୋଲି ଡାକିବାରୁ ତାଙ୍କର ଧ୍ୟାନ ଭାଙ୍ଗିଲା । ସେ ଦୀର୍ଘନିଃଶ୍ୱାସ ପକାଇ ଆଖି ପୋଛିଲେ ।)

ସତ୍ୟବତୀ - ଚାଲରେ ବାପା ତୁମକୁ ଭାତ ଦେବି ।

ରାମ - ବଇଁଶୀ ଖାଇବ ନାହିଁ କି ?

ସତ୍ୟବତୀ - ସେ ତା'ର ଯେତେବେଳେ ଆସୁଛି ଆସୁ । ତୁମେ ଚାଲ ଖାଇବ ।

ଦାମ - ନା...ବଇଁଶୀ ନଆସିଲେ ଆମେ ଖାଇବୁ ନାହିଁ....

ସତ୍ୟବତୀ - ତୁମେ ଚାଲ । ସେ ଆସି ପଛରେ ଖାଇବ ଯେ । ତୁମେ ଆମର ସୁନାପିଲା, ସେ ଦୁଷ୍ଟ ପିଲାଟା ସାଙ୍ଗରେ ଖାଇବ କାହିଁକି ? ଚାଲ । (ଦୁହିଁକୁ ନେଇ ଘରଭିତରକୁ ଚାଲିଗଲେ । ପଛ ଆଡୁ ପ୍ରବେଶ କଲେ ବଂଶୀବଲ୍ଲଭ ଗାଧୋଇ —)

ବଂଶୀ - ମା, ମା...ଏମା....।

ସତ୍ୟବତୀ - (ଘରୁ) କିଏ ବଂଶୀ କିରେ ?

ବଂଶୀ - ହଁ...ହଁ ପଛରେ ଡାକିବୁ । ଆଣ ଆଗେ ଭାତ ଆଣ ।

ସତ୍ୟବତୀ - (ପ୍ରବେଶ) କିରେ ! ଚଉପାଢ଼ୀରୁ ଚାଲିଆସି ତୋଟାରେ ପିଲାଙ୍କ ସହିତ ଦୁଷ୍ଟାମି କରୁଥିଲୁ କାହିଁକି ? ସେ ମିଶ୍ରଘର ପିଲା ଦୁଇଟିକୁ ମାରି କ'ଣ କରିଛୁ ? କାନ୍ଦି କାନ୍ଦି ଆସି ମୋତେ କହୁଥିଲେ । ମୁଁ ତାଙ୍କୁ ବୁଝେଇ ସୁଝେଇ ଏଠି ଅଟକେଇଛି...ନହେଲେ ସେ ଯଉଁ ରଘୁମିଶ୍ର ତାକୁ ଜାଣିଛୁନା ଦି'ଫାଳ କରି ଚିରି ଦେବ— (ନରମିଯାଇ) ଛି ବାପ, ଏମିତି ସବୁ କରନ୍ତି ନା ? ତୋତେ ପରା ମୁଁ ଏତେ ବୁଝଉଛି ! ପରଛୁଆକୁ ମାରିବୁ ନାହିଁ । ଭାଇ ପରି ସ୍ନେହ କରିବୁ । ପରବାଡ଼ି ଘରକୁ ଯିବୁ ନାହିଁ...ମନଦେଇ ପାଠପଢ଼ିବୁ....ତ'ରମାନନା ଆଉ ରାଧାନନା କିମିତି ପାଠ ପଢ଼ିଥିବାରୁ ସମସ୍ତେ ତାଙ୍କୁ ମାନୁଛନ୍ତି...ପଣ୍ଡିତେ ବୋଲି ଡାକୁଛନ୍ତି ଦେଖୁଛୁ ନା ?...ତୋତେ ସବୁ କ'ଣ କହୁଛନ୍ତି ? ...ବଇଁଶୀଟା ବେଧାଟେ...ଦୁଷ୍ଟ...ଚୋର...ଏସବୁ କ'ଣ ତୋତେ ଭଲ ଲାଗୁଛି ? ମୋ ବାପଟା ପରା (ବଂଶୀକୁ କୋଳକୁ ଆଉଜେଇ ଆଣି ଚୁମା ଦେଲେ) ସୁନାଟା ପରା, ମୋ କଥା ଯଦି ମାନିବୁ ମୁଁ ତୋ'ର ଝିଅ ହେବି । ନହେଲେ ବାପବୋଲି ଡାକିବି ନାହିଁ । ସବୁ କହିବେ...ସଚି ବାପଟା ଚୋର...ଦୁଷ୍ଟ.....(ବଂଶୀ ସତ୍ୟକୁ କୁଣ୍ଢାଇ ପକାଇଲେ ।)

ବଂଶୀ - ନାଁଲୋ, ମୁଁ କ'ଣ ଆଉ କାହାକୁ ମାରୁଛି ? ଆଜି ସିନା ଦାମ ଖେଳିଲା ନାହିଁ ବୋଲି ତାକୁ ମାରିଲି । ରାମ ପରା ମୋତେ ଆଗ ମାରିଲା ! ତା'ପରେ ଆମେ ଦିହେଁ ଗଡ଼ାଗଡ଼ି ଲାଗିଲୁଁ !...ମୁଁ କ'ଣ ଆଉ କା' ବାଡ଼ିକି ଯାଉଛି କି ? ସେଦିନ ପରା ହଟନନା ବାଡ଼ିର ପିଜୁଳି ଗଛ ଭାଙ୍ଗିଗଲା ବୋଲି ତାଙ୍କ ଭାଉଜ ଆମକୁ ଛାଞ୍ଚୁଣି

ପୋପାଡ଼ିଲା, ଆଗେ ପଢ଼ିଛ ଆସିଲୁ ! ସେଥିପାଇଁ ପରା ମୁଁ ଆଜି କାହାରି ବାଡ଼ିକି ଯାଉନାହିଁ ।

ସତ୍ୟବତୀ - (କୋଳ ଛାଡ଼ିଦେଇ) ହଉ ତୁ ବସ୍ । ମୁଁ ଭାତ ଆଣେ ଖାଇବୁ । ଖାଇସାରି ସେ ଘରେ ରାମ ଆଉ ଦାମ ଶୋଇଛନ୍ତି ତାଙ୍କ ପାଖରେ ଥିରିକି ଶୋଇ ପଡ଼ିବୁ । ଏଖରା ବେଳଟାରେ ଆଉ କୁଆଡ଼େ ଯିବୁନାହିଁ । (ବଂଶୀ ବସିଲେ । ସତ୍ୟବତୀ ଚାଲିଯାଉଥିଲେ ।)

ବଂଶୀ - ଏ' ମା ! ଶୁଣ୍ ତି ଗୋଟେ କଥା....

ସତ୍ୟବତୀ - (ଫେରିପଡ଼ି) କ'ଣ ରେ ?

ବଂଶୀ - ମୋତେ କାହିଁକି ପାଠପଢ଼ିତେ ଭଲ ଲାଗୁନାହିଁ....ମୁଁ ପାଠ ନପଢ଼ିଲେ କ'ଣ ହେବ ନାହିଁ...ଦୁଷ୍ଟାମୀ କରିବିନି ଯେ ?

ସତ୍ୟବତୀ - ଛି, ଏତେ ପରା ବୁଝେଇଲି ? ଶେଷକୁ ଏଇଆ ବୁଝିଲୁନା ? ପାଠ ନ ପଢ଼ିଲେ କେହି ପଚାରିବେ ନା...ସମସ୍ତେ ଚିଡ଼େଇବେ ଗଜମୂରୁଖ-ଚଲଣାଚୁର । ଦେଖୁନୁ ଚଉପାଢୀରେ ଗାଁର ସବୁପିଲା ପାଠ ପଢୁଛନ୍ତି...ଏଇ ରାମ ଆଉ ଦାମ ତୋ ଠାରୁ ସାନହେଇ କେତେ ପାଠ ପଢ଼ିଗଲେଣି ।

ବଂଶୀ - (କିଛି ଭାବି) ହଉ ପଢ଼ିବା...ତୁ ଭାତ ଆଣ । ମୋତେ ଭୋକ ହେଲାଣି । (ସତ୍ୟବତୀ ଚାଲିଗଲେ ।) ମୁଁ ଦେଖୁଛି ଏଇପାଠଟା ମୋତେ ବହୁତ ଅଡୁଆ ହଉଛି । ମୋର ଜମା ହେଲାନି । ମୁଁ କରିବି କ'ଣ ? ଆମ ବଂଶରେ ସମସ୍ତେ ପଣ୍ଡିତ । ମୁଁ ଏକା ମୂର୍ଖ । ମୋ କର୍ମରେ ତ ନାହିଁ ଦବ କିଏ....(ସତ୍ୟବତୀ ଭାତନେଇ ପହଞ୍ଚିଲେ ।)

ସତ୍ୟବତୀ - କ'ଣ କହୁଥିଲୁ କିରେ ?



ବଂଶୀ - ଏଇ...ଭାବୁଛି...ପାଠଟା କେମିତି ହେବ !

ସତ୍ୟବତୀ - (ହସି) ପାଗଳାଟା, ପାଠ ସିନା ପଢ଼ିଲେ ହବ...ନପଢ଼ି ଇମିତି ବସି ଭାବିଲେ କ'ଣ ହେଇଯିବ ?...ହଉ ଖା — ଶୁଖିଯିବ । (ବଂଶୀ ଭାତ ପାଖରେ ଦେଖିଲେ ପାଉଁଶ । )

ବଂଶୀ - ଇସ୍...ମା,...ଏ ଭାତ ପାଖରେ ପାଉଁଶ କାହିଁକି ପଡ଼ିଛି ? (ସତ୍ୟବତୀ ପ୍ରଥମେ ଚମକି ପଡ଼ି ତା'ପରେ ଘରଆଡକୁ ଚାଲିଯାଉଥିଲେ ।) ମା ! (ସେଇଠି ଠିଆହେଇ ଗଲେ ସତ୍ୟବତୀ) ମୁଁ ପରା ପଚାରୁଛି ଭାତରେ ପାଉଁଶ ମିଶିଲା କିମିତି ?

ସତ୍ୟବତୀ - ଆରେ, କେମିତି ମିଶି ଯାଇଥିବ ଟିକିଏ କାଢ଼ି ପକେଇ ଖାଇଦେ ।

ବଂଶୀ - କିମିତି ମିଶିଲା ନାଁ ? ଭାତରେ ଯଦି ଉଡ଼ି ପଡୁଥିଲା ତେବେ ତ ଟିକିଏ ପଡ଼ିଥା'ନ୍ତା । ଇମିତି ମେଞ୍ଚେ କିମିତି ଗୁଞ୍ଜାଗଲା । ଯିମିତି କିଏ ରଖିଦେଇଛି ! ଯାର ଘଟଣା କିଛି ନକହିଲେ ମୁଁ ଜମା ଖାଇବି ନାହିଁ...ମା' ଏଇ ଉଠିଲି...

ସତ୍ୟବତୀ - ଆରେ ପାଗଳା, ପାଠ ପଢ଼ିଲୁ ନାହିଁ । କାହାର ପୁଅ, କାହାର ନାତି ହୋଇ ମୂର୍ଖ ହେଲୁ ଖେପ୍ପା ହେଇ ବୁଲିଲୁ । ଏଥିଲାଗି ସବୁରି ମନରେ କଷ୍ଟ । ଆଚାର୍ଯ୍ୟେ ମୋତେ ନିୟମ ଦେଇ କହିବାରୁ ମୁଁ ଟିକିଏ ପାଉଁଶ ଗୁଞ୍ଜି ଦେଇଛି । କାଢ଼ି ପକାଇ ଖା - କିଛି କ୍ଷତି ହେବ ନାହିଁ ଯେ...

ବଂଶୀ - ...ମା' !... (ଆଖି ଢ଼ଳ ଢ଼ଳ ହେଇଗଲା.....)

ସତ୍ୟବତୀ - ସୁନାଟା ପରା ଖାଇଦେ...

ବଂଶୀ - ମୋ ଖାଇବା ଭାତରେ ପାଉଁଶ ! ମୁଁ ଖାଇବି କ'ଣ ମା'...ମା

ହେଇ ପୁଅକୁ ପାଉଁଶ ଦେଇଛୁ ଖାଇବା ପାଇଁ...(ଆଖିରୁ ଲୁହ ଗଡ଼ିପଡ଼ିଲା । ସେ ଉଠି ସିଧା ଦାଣ୍ଡ ଆଡ଼େ ପଳେଇଲେ । ସତ୍ୟବତୀ ମଧ କାନ୍ଦି ପକାଇଲେ ।)

ସତ୍ୟ - ବଇଁଶୀ...ବଇଁଶ'ରେ...ବାପା ବଇଁଶୀ..ଭଲଭାତ ଦଉଛି ଖାଇବୁ ଆ....ବଇଁଶୀ....ରେ ବଇଁଶୀ (ଦାଣ୍ଡଆଡକୁ ଦଉଡ଼ିଗଲେ ।) କୁଆଡ଼େ ଗଲୁରେ ଏଖରାଟାରେ ! ବଇଁଶୀ ସୁନାଟା ପରା ଯା'....ନା...ବଇଁଶୀ....

-ପରଦା-

## (୬)

(ପୂର୍ବଦୃଶ୍ୟର ପରବର୍ତ୍ତୀ ଘଟଣା । ସ୍ଥାନ ଓ କାଳ ପୂର୍ବଦୃଶ୍ୟର । ବ୍ୟସ୍ତ ଭାବରେ ପ୍ରବେଶ କଲେ ରମାବଲ୍ଲଭ ।)

ରମା - ମା ! ....

ସତ୍ୟବତୀ - (ଭିତରୁ) କ'ଣରେ ପାଇଲୁ ବଇଁଶୀକୁ ?

ରମା - ନା...ସାରା ଗାଁଟାକୁ ମୁଁ ହନ୍ତାଳି ପକେଇଲିଣି । ଏମିତି ଉଡ଼ିଗଲାନା କ'ଣ ? ସମସ୍ତେ କହୁଛନ୍ତି — ''ଆମେ ଦେଖିନାହୁଁ । ଏ ଯେଉଁ ଖରା ହେଉଛି । ଶେଷରେ ମୋ ତଣ୍ଟି ଶୁଖିଗଲାଣି ।

ସତ୍ୟବତୀ - ଆରେ କରିବା କ'ଣ ? କୁଆଡ଼େ ଗଲା ?

ରମା - ଯୁଆଡ଼େ ଯାଉ । ଆମର ଆଉ ଚାରା କ'ଣ ? ହଟନାଗର ଜାଣନ୍ତି । ଖରା ଗଡ଼ିଲେ ପଛେ ଯୁଆଡ଼େ ଯିବି । ଗରଦପୁର ଆଡ଼େ ଯଦି ଚାଲି ଯାଇଥିବ, ସେଥିର ବି ସନ୍ଧାନ ନେବି । ମନଦୁଃଖ



କରନା । ଚଗଲାଟା ଯଦି ନେଉଁଠି ତୋଟା ଭିତରେ ଗଛରେ ଚଢ଼ିଥିବ ବଳେ ଆସୁନିକି !

ସତ୍ୟବତୀ - ନାଇଁରେ ରମା ! ଛୁଆକୁ ମୋର ଭାରି ବାଧିଛି । ଏତେଦିନ ହେଲା ମୁଁ ତାକୁ କାନ୍ଦିବାର ଦେଖିନଥିଲି । କେତେ ମାରିଛି କେତେ ଗାଳି ଦେଇଛି । କିନ୍ତୁ କାନ୍ଦିବାର ଦେଖିନାହିଁ । ଆଜି କାନ୍ଦି କାନ୍ଦି ଭାତ ପାଖରୁ ଉଠିଗଲା । ନିଶ୍ଚୟ ତାକୁ ବାଧିଛି । ଆଚାର୍ଯ୍ୟେ ଯେତେବେଳେ କହିଲେ ସେତେବେଳେ ମୋର ଅନ୍ୟ ବାଟ ନଥିଲା ରମା !

ରମା - ଆଚାର୍ଯ୍ୟେ କହିଛନ୍ତି ! ହୁଏତ ଭାଗ୍ୟ ବଦଳିଯାଇ ପାରେ...ତେବେ ପିଲାଟା ଏ ବୈଶାଖ ମାସ ଖରାଟାରେ କୁଆଡ଼େ ଗଲା...ଏଇଟା ବଡ଼ ବାଧୁଛି....

ଆଚାର୍ଯ୍ୟ - (ପ୍ରବେଶ କରି) କିରେ ରମା ! ସତରେ କ'ଣ ବଇଁଶୀ କୁଆଡ଼େ ପଳେଇଚି ? ମୁଁ ନିମିତି ଶୁଣିଚି, ସିମିତି ଦୌଡ଼ିଛି । କ'ଣ ସତ କଥା ଏଟା ?

ସତ୍ୟ - ହଁ, ଆଜ୍ଞା ! ଆପଣ ଯିବା ପରେ ସେ ଆସି ପହଞ୍ଚିଲା । ତା'ପରେ ମୁଁ ତାକୁ ଭାତ ବାଢ଼ିଦେଲି । ପହିଲୁ ଭାତଗୁଣ୍ଡା ପାଟିକି ନେଇନି । ଯେମିତି ଦେଖିଲା ଭାତରେ ପାଉଁଶ ମିଶିଛି, ସେମିତି ମୋତେ ପଚାରିଲା । ନିହାତି ଜିଦ୍ ଯେତେବେଳେ କଲା, ମୁଁ ତାକୁ କହିଦେଲି...ସେଇଠୁ ତ କାନ୍ଦି କାନ୍ଦି ପଳେଇଛି...

ଆଚାର୍ଯ୍ୟ - କହିଦେଇ ଖରାପ କରିଦେଲ...ଟିକିଏ ବାଁରେଇ ଦେଇଥିଲେ ହୋଇଥାନ୍ତା...(କିଛି ଭାବି)...ଆଚ୍ଛା ହଉ ଠିକ୍ ହେଇଛି । ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ । ମୋ ଔଷଧ ଠିକ୍ କାମ କରିଛି ।

ଫେରିଆସିବ । ଆଉ ଯେତବେଳେ ଆସିବ ସେତେବେଳେ ଏ ବଇଁଶୀ ଆଉ ନ ଥିବ...ମୋତେ ଫେର ପଛରେ କହିବ ଯେ...ହଉ ମୁଁ ଯାଉଛି...ଆଉଥରେ କହୁଛି — ତୁମେ କିଛି ଭାବ ନାହିଁ....ଖାଅପିଅ....ଆଉ ଏ ଖରାଟାରେ କୁଆଡ଼େ ବୁଲୁନା ରମା ! ସେ ଠିକ୍ ଯାଗାରେ ପହଞ୍ଚିଛି । ମୋ ଔଷଧ ତାକୁ ଠିକ୍ କାଟୁ କରିଛି...ହଉ ମୁଁ ଯାଉଛି ରମା ବୋଉ....

ସତ୍ୟବତୀ - ବସନ୍ତୁ ଟିକିଏ । ସେତେବେଳେ ଆସିଥିଲେ ପାନଟିକିଏ ଦେଇ ପାରିଲି ନାହିଁ । ଏଇ ଆସୁଛି ।

ଆଚାର୍ଯ୍ୟ - ଆଚ୍ଛା...କହିଲଣି ଯେତେବେଳେ....

(ରମା ଖଣ୍ଡିଏ ଆସନ ଦେଲା । ଆଚାର୍ଯ୍ୟେ ବସିଲେ । ସତ୍ୟବତୀ ଘରକୁ ଗଲେ ପାନ ଆଣିବାକୁ । ଏହି ସମୟରେ ପ୍ରବେଶ କଲେ ହଟନାଗର ଓ ବିରଞ୍ଚି ।)

ହଟ - ଏଇତ, ଗୋସେଇଁ ପୁଅ, ଘରେ ଅଛନ୍ତି । ଆରେ ଆଚାର୍ଯ୍ୟେ ବି ବସିଛନ୍ତି ତ । ନମସ୍କାର ଆଜ୍ଞା ! (ନମସ୍କାର କଲେ ।)

ଆଚାର୍ଯ୍ୟ - କିଏ ହଟ ! କୁଆଡ଼େ ଖରାବେଳଟାରେ ? (ବିରଞ୍ଚିକୁ ଦେଖି) ସେ କିଏ ?

ହଟ - ସେ ହେଉଛି ଆମ ଶଶୁରଙ୍କ ସାନ ପୁଅ । ସଛିଆରୁ ଆସିଛି । (ରମାବଲ୍ଲଭଙ୍କଠାରେ ଟିକିଏ ଶିହରଣ ଦେଖାଗଲା ।)ରମା ଘର ଆଡ଼େ ଟିକିଏ ବୁଲିଆସିବା ପାଇଁ କହିଲା ଯେ ତାକୁ ନେଇଆସିଛି । ବାଟରେ ଶୁଣୁଛି — ବଇଁଶୀ କାଳେ କୁଆଡ଼ ପଳେଇଛି ?

ରମା - ହଁ ପରା ! ଖରାଟାରେ ନଖାଇ ନପିଇ କୁଆଡେ ପଳେଇଛି,



ଆଉ ଦୁଇ ଖଣ୍ଡ ପାନ ଆଣିବୁ । ହଟ ନନା ହେରିକା ଆସିଛନ୍ତି । (ଭିତରକୁ ଲକ୍ଷକରି) ବସ — ବସୁନ କାହିଁକି ହଟନନା ! (ଆଉ ଦୁଇଖଣ୍ଡ ଆସନ ପକେଇ ଦେଲେ । ଦୁହେଁ ବସିଲେ ।)

ଆଚାର୍ଯ୍ୟ - ହଁ, ସଛିଆର ଖବର କ'ଣରେ ପୁଅ ? ଗୋସ୍ୱାମୀ ଘର ସବୁ ଭଲରେ ଅଛନ୍ତି ତ ?

ବିରଞ୍ଚି - ହଁ । (ସତ୍ୟବତୀ ପାନ ନେଇ ପ୍ରବେଶ କଲେ । ରମା ତାଙ୍କ ଠାରୁ ନେଇ ତିନିଜଣଙ୍କୁ ଦେଲେ । ଆଚାର୍ଯ୍ୟ ପାନନେଇ, "ଯାଉଛିରେ, ରମା" କହି ଚାଲିଗଲେ । )

ସତ୍ୟ - ଏ ପୁଅଟି କିଏ ରେ ହଟ !

ହଟ - ସେ ସଛିଆରୁ ଆସିଛି ।

ସତ୍ୟ - ଅ...ତ' ଶଳାକିରେ ?

ହଟ - (ହସି) ହଁ ।

ସତ୍ୟ - କୁଆଡ଼େ କିମିତି ଚାଲି ଆସିଲ ସବୁ ।

ହଟ - ରମା ପାଇଁ କାଳେ ସମ୍ବନ୍ଧ ପଡ଼ିଛି ସଛିଆରେ ! ସତ ନା ମାଉସୀ ମୋତେ ଏପର୍ଯ୍ୟନ୍ତ ତ କହିନାହିଁ ରମା ।

(ରମା ଚାଲିଗଲା ଘରଆଡକୁ)

ସତ୍ୟ - ପଡ଼ିଛି ତ ରେ ହଟ ! କ'ଣ ହେଉଛି କେଜାଣି ? ସେଟା କ'ଣ ସାରା ହେଲାଣି ?

ହଟ - ମୋତେ ତ ଏଇ ବିରଞ୍ଚି ଆଜି କହିଲା । ମୁଁ କ'ଣ ଜାଣିଥିଲି କି ? ତାକୁ କାଳେ ଝିଅଟିର ମା କହିଛନ୍ତି ଦେଖିଯିବା ପାଇଁ ରମାକୁ ।

ସତ୍ୟ - ସତରେ ପୁଅ !

ବିର - ହଁ ମାଉସୀ !

ସତ୍ୟ - କହିବୁ ଯାଇଁକି — ପୁଅଟା କଣାଟେ...କଥା କହିପାରୁନି... ମୁଁହରେ ବସନ୍ତ ଦାଗ....(ହସି)

ବିର - ଯା ପୁଣି କହିବାକୁ ଅଛି । ? ତାକୁ କିଏ ବାଛିବ ?

ସତ୍ୟ - ଝିଅଟି କିମିତିରେ ?

ବିର - ମୋ ଠାରୁ ଦି'ବର୍ଷ ସାନ ହେବ । ହେଲେ ରୂପ ଗୁଣରେ ଆମ ଗାଁରେ ସ୍ୱବୁଝିଅଙ୍କ ଠୁଁ ବଳି । ଭକ୍ତି ବି ସେମିତି । ସକାଳୁ ଉଠି ଦି'ଘଣ୍ଟା ଆଗେ ଠାକୁରଙ୍କ କାମରେ ଲାଗିବ । ତା'ପରେ ରନ୍ଧାବଢ଼ା କରି ବାପ ମାକୁ ଦେବ...ରାତିରେ ଗୋଡ଼ ଘଷି ନଦେଲେ ଶୋଇବ ନାହିଁ ।

ସତ୍ୟ - କେଜାଣି, ମୋ ଭାଗ୍ୟରେ କ'ଣ ଅଛି ?

ବିର - ତା ବାପାଙ୍କର ଏକା କଥା — ଏଠି ନଦେଇ ଆଉ କେଉଁଠି ଦେବେନି । ଆଉ ଦି' ଚାରି ଦିନ ପରେ ପରା ପ୍ରସ୍ତାବ ସାରା କରିବା ପାଇଁ ଆସିବେ...ହଉ ମାଉସୀ, ଆମେ ଯାଉଛୁଁ । ଖରା ଗଡ଼ିଲାଣି । ଯିବି ଏଇନେ ।

ସତ୍ୟ - କିରେ ଏତେ ତଡ଼ବଡ଼ି ?

ହଟ - ତା'ର ପରା ବାହାଘର ମାଉସୀ ! ଭଉଣୀକୁ ନେଇତେ ଆସିଛି ।

ସତ୍ୟ - ସତେ ! ହଉ ଯ' ଯ' — ସମୁଦୁଣିଙ୍କି କହିଦବୁରେ ପୁଅ ! ବଡ଼ ବଡ଼ ଗୁଣ୍ଡା ଖାଉଥିବେ । (ହସିଲେ ।)

ବିରଞ୍ଚି - (ହସି ହସି ଚାଲିଗଲେ ।)

- ପରଦା -



## ଛାୟାଦୃଶ୍ୟ

(ହଟନାଗରଙ୍କ ମନ୍ଦିର — ଗଭୀର ରାତ୍ରି, ମନ୍ଦିର ଭିତରେ ଅତି ଝାପ୍‌ସା ଦେଖାଯାଉଛି — ଖୁବ୍ ସାବଧାନ ସହକାରେ ନିରୀକ୍ଷଣ କଲେ ଦେଖାଯିବ...ଗୋଟିଏ ପୁରୁଷ ମୂର୍ତ୍ତି — ଜଟାଜୁଟଧାରୀ....ଅନ୍ୟଟି ସ୍ତ୍ରୀ ମୂର୍ତ୍ତି — ଦୁହେଁ ଛାୟାଠାରୁ ବି ଅସ୍ପଷ୍ଟ ଭାବରେ ଦେଖାଯାଉଥାନ୍ତି । ଜଣେ ଶିବ, ଅନ୍ୟଟି ପାର୍ବତୀ....)

ପାର୍ବତୀ - ପ୍ରଭୁ ! ....

ଶିବ - ଦେବୀ....

ପାର୍ବତୀ - ଭାବରେ ନିମଗ୍ନ ରହି ସୃଷ୍ଟିକୁ ଭୁଲିଯାଉଛନ୍ତି ଯେ...ସଂହାରକର୍ତ୍ତା ହୋଇ ସୁଦ୍ଧା ଜୀବ ଜଗତ୍‌ର ଦୁଃଖ ଦୂରୀକରଣ ଯେ ଆପଣଙ୍କର କର୍ତ୍ତବ୍ୟ !

ଶିବ - ମୋ କର୍ତ୍ତବ୍ୟରେ କେବେ ହେଳା କରିବାର ଦେଖିଛ ଦେବୀ ?

ପାର୍ବତୀ - ଦେଖିତ ନାହିଁ...କିନ୍ତୁ ବର୍ତ୍ତମାନ ଯେ ଦେଖୁଛି !

ଶିବ - ଅସମ୍ଭବ ଦେବୀ, ପ୍ରତି ମୂହୁର୍ତ୍ତରେ ମୁଁ ସାରା ଜଗତ୍‌କୁ ପୁଙ୍ଖାନୁପୁଙ୍ଖ ଭାବେ ଅନୁଶୀଳନ କରୁଛି ।

ପାର୍ବତୀ - ତେବେ, ବି ଯଦି ଭୁଲ ରହିଯାଏ ?

ଶିବ - ଶକ୍ତିର ମାୟାରେ ଶିବ ଯେ ସଦାସର୍ବଦା ମୋହିତ । ଯଦି ଭୁଲ୍ ରହିଯାଏ, ତେବେ ମୁଁ କହିବି ସେ ଭୁଲ୍ ମୋର ନୁହେଁ...ଦେବୀଙ୍କର !

ପାର୍ବତୀ - ପାରି ହେବନି ପ୍ରଭୁ ଆପଣଙ୍କୁ । ପ୍ରତି କ୍ଷେତ୍ରର ମୁଁ ପରାହତ । ପ୍ରଭୁଙ୍କର ଯୁକ୍ତି ଯେ ଅକାଟ୍ୟ ! ତେବେ......

ଶିବ - କୁହ ଦେବୀ ।

ଅବହେଳା କରନ୍ତି, ତେବେ କ'ଣ ନିନ୍ଦା ହେବ ଶକ୍ତିକୁ ?

ଶିବ - ଜଗତ୍ ଜାଣେ ଶିବ ଅର୍ଦ୍ଧନାରୀଶ୍ୱର । ଶକ୍ତି ବିନା ତା'ର ସ୍ଥିତି ଅସମ୍ଭବ । ଯଦି କେବେ ସେ ତା'ର କର୍ତ୍ତବ୍ୟରେ ହେଳା କରେ ତେବେ ଜଗତ୍ ଜାଣିବ ଯେ ଶକ୍ତି ତାଙ୍କ କର୍ତ୍ତବ୍ୟରେ ହେଳା କରିଛନ୍ତି ।

ପାର୍ବତୀ - (ଆଶ୍ଚର୍ଯ୍ୟରେ) ଶକ୍ତି ହେଳା କରିଛନ୍ତି ?

ଶିବ - ହଁ... ଶିବଙ୍କର ଭାବମଗ୍ନ ଅବସ୍ଥାରେ ତାକୁ ଜଗତ୍‌ର ଖବର ଦେବା ତ ଶକ୍ତିଙ୍କର କର୍ତ୍ତବ୍ୟ !

ପାର୍ବତୀ - ଧନ୍ୟ ପ୍ରଭୁ, ଆପଣଙ୍କର ଯୁକ୍ତି । ମୋ କର୍ତ୍ତବ୍ୟ ମୁଁ ଏ ପର୍ଯ୍ୟନ୍ତ ଭୁଲି ଯାଇଥିଲି । କି ଶକ୍ତି ପ୍ରଭୁ ଆପଣଙ୍କର ! ... ଜଣେ ଭକ୍ତ ଅଦ୍ୟ ଯାବତ୍ ସପ୍ତଦିନ ବ୍ୟାପି ଆପଣଙ୍କୁ ସ୍ମରଣ କରୁଛି । ଏ କଥାକି ପ୍ରଭୁ ଅବଗତ ନୁହନ୍ତି ?

ଶିବ - ଜାଣେ ଦେବୀ !

ପାର୍ବତୀ - ତଥାପି ନୀରବ କାହିଁକି ? ଭକ୍ତ କ'ଣ ଅଯୋଗ୍ୟ ?

ଶିବ - ଯେତେ ଯୋଗ୍ୟ ହେଲେ ମଧ କଠୋର ସାଧନା ନ କଲେ ଦୈବୀ ଶକ୍ତି ପାଇବା ଅସମ୍ଭବ ।

ପାର୍ବତୀ - ତେବେ କେତେଦିନ ପରେ ଭକ୍ତର ସାଧନା ସିଦ୍ଧ ହେବ ?

ଶିବ - ଆଜି ରାତିରେ ମୁଁ ତାକୁ ସନ୍ତୁଷ୍ଟ କରିବା ପାଇଁ ସ୍ଥିର କରିଛି ।

ପାର୍ବତୀ - ପ୍ରଭୁଙ୍କୁ ସ୍ମରଣ କରାଇ ଦେବା ମୋର ତେବେ ନିରର୍ଥକ !

ଶିବ - ନା, ଦେବୀ, ନିରର୍ଥକ ନୁହେଁ । ବରଂ ସାର୍ଥକ । ଭକ୍ତର ଗୁହାରୀ



ପଡ଼ିଯାଇଛି । ଏଇ ମାତ୍ର ମୁଁ ତା'ର ମନସ୍କାମ ପୂରଣ କରିବି । ମୋର ଉତ୍ତରେଶ୍ୱର ପୀଠରୁ ତାକୁ ଏଠାକୁ ନେଇ ଆସୁଛି । ଦେବୀଙ୍କର ମତାମତ ଆବଶ୍ୟକ ।

ପାର୍ବତୀ - ଲଜ୍ଜା ଦିଅନ୍ତୁ ନାହିଁ ପ୍ରଭୁ ! ଭକ୍ତର ଗୁହାରି ଶୁଣିବାକୁ ଆପଣଙ୍କର କର୍ଣ୍ଣ ଯେ ସଦାସର୍ବଦା ପ୍ରସ୍ତୁତ, ମୁଁ ତାହା ବୁଝି ବି ବୁଝି ପାରୁ ନଥିଲି । କ୍ଷମା କରିବେ ମୋତେ ।

ଶିବ - ଶକ୍ତିକୁ କ୍ଷମା ଦେବାର ଶକ୍ତି ଶିବର ନାହିଁ ଦେବୀ । ସେ ନିଜେ ନିଜକୁ କ୍ଷମଣୀୟ କରିପାରନ୍ତି ।

ପାର୍ବତୀ - ପ୍ରଭୁ...(ଶିବଙ୍କର ବକ୍ଷରେ ଢ଼ଳିପଡ଼ିଲେ ।)

ଶିବ - ଏଇ ଦେଖ, ମୁଁ ସେ ଭକ୍ତକୁ ତୁମ ସମ୍ମୁଖରେ ଉପସ୍ଥିତ କରାଉଛି । (ରଙ୍ଗମଞ୍ଚ ଅନ୍ଧାର ହୋଇଗଲା କ୍ଷଣିକ ପାଇଁ ତା' ପରେ ଦେଖାଗଲା — ପୁଣି ସେହି ଝାପ୍‌ସା ଆଲୋକରେ ଦୁଇଟି ଛାୟାମୂର୍ତ୍ତି — ଶିବ-ପାର୍ବତୀ । ସାଷ୍ଟାଙ୍ଗ ଭାବରେ ଧାରଣା ଦେଇଛନ୍ତି ବାଳକ — ବଂଶୀ)

ପାର୍ବତୀ - ଆହା ! କେଡ଼େ ଛୋଟ ପିଲାର କି ସାଧନା !

ଶିବ - ଉଠ ବତ୍ସ ! ତୁମ୍ଭର ସାଧନା ସଫଳ ହୋଇଛି । (ଶିବଙ୍କର ତ୍ରିନେତ୍ରରୁ ଗୋଟିଏ ଆଲୋକ ରେଖା ବଂଶୀବଲ୍ଲଭଙ୍କଉପରେ କ୍ଷଣିକ ପାଇଁ ପତିତ ହୋଇ ପୁଣି ଲିଭିଗଲା । ସେ ଧୀରେ ଧୀରେ ଉଠିବସିଲେ । ମନ୍ତ୍ରମୁଗ୍ଧ ପରି ବସିରହିଲେ ମୂର୍ତ୍ତି ଯୁଗଳକୁ ଚାହିଁ ।) ତୁମ୍ଭର ରସନା ପ୍ରକାଶ କର ବାଳକ ! (ବଂଶୀବଲ୍ଲଭ ନିଜର ଜିହ୍ୱା ବାହାର କଲେ । ଶିବ ସେହି ଜିହ୍ୱାରେ କିଛି ଲେଖିଦେଇ ତାଙ୍କ

ମସ୍ତକରେ ହାତ ବୁଲାଇ ଦେଲେ ।) ତୁମ୍ଭର ମୂର୍ଖତା ଦୂର ହେଲା ବାଳକ ! ତୁମ୍ଭେ ଜଣେ କବି ହେବ । ଯାବତ୍ ଚନ୍ଦ୍ରାର୍କ ତୁମ୍ଭର ଯଶ ଏ ଜଗତରେ ଘୋଷିତ ହେଉଥିବ । ଗୃହକୁ ପ୍ରତ୍ୟାବର୍ତ୍ତନ କରି ସ୍ୱକାର୍ଯ୍ୟରେ ରତ ହୁଅ । (ସଙ୍ଗେ ସଙ୍ଗେ ରଙ୍ଗମଞ୍ଚ ଶୁଭ୍ର ଆଲୋକରେ ଉଦ୍ଭାସିତ ହୋଇ ଉଠିଲା । ଦେଖାଗଲା ଶିବ ଓ ପାର୍ବତୀ ଅନ୍ତର୍ହିତ ହୋଇଛନ୍ତି । ହଟନାଗରଙ୍କର ଲିଙ୍ଗ ତତ୍ ପରିବର୍ତ୍ତେ ସ୍ଥାନ ପାଇଛି । ବଂଶୀ କିଛି କ୍ଷଣ ପାଇଁ ମୋହାବିଷ୍ଟ ହୋଇ ପଡ଼ିଲେ । ତା'ପରେ ସହସା ତାଙ୍କର ଜ୍ଞାନୋଦୟ ହେଲା । ସେ ନିଜର ଶରୀରକୁ ଏବଂ ଚାରିଆଡ଼ ଦେଖିନେବା ପରେ କହିଲେ )

ବଂଶୀ - ଏ କ'ଣ ? ମୁଁ ଉତ୍ତରବାହିନୀର ଉତ୍ତରେଶ୍ୱର ମହାଦେବଙ୍କ ଠାରୁ ହଟନାଗରଙ୍କର ମନ୍ଦିରକୁ କିପରି ଆସିଲି ? ମୋର ହୃଦୟରେ ଏପରି ପୁଣ୍ୟଭାବ କାହିଁକି ଜାଗିଉଠୁଛି...ଏ କ'ଣ, ଏ କ'ଣ...ହଟନାଗରଙ୍କର ଲିଙ୍ଗ ଯେ ଆଜି ଏକ ଅପୂର୍ବ ଜ୍ୟୋତି ଧାରଣ କରିଛି । ପ୍ରଭୋ...ପ୍ରଭୋ...କି ଅପାର ଦୟା ତୁମ୍ଭର ପ୍ରଭୋ...ମୁଁ ଆଜି ଧନ୍ୟ ହୋଇଗଲି । ମୋର ଜନ୍ମ ସାର୍ଥକ ହୋଇଗଲା । ମା, ଦେଖିବୁ ଆ...ବାପା ତୁମ୍ଭେ ସ୍ୱର୍ଗରୁ ଚାହିଁ ଦେଖ— ତୁମ ପୁଅ ବଇଁଶୀ ମୂର୍ଖ ନୁହେଁ...ସେ କବି....ସେ ପଣ୍ଡିତ...ସେ ସାଧକ ହେଇପାରିଛି ଆଜି ଏଇ ହଟନାଗରଙ୍କର କୃପାରୁ । (ଆନନ୍ଦରେ ପୁଣି ଥରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଅନ୍ତରୀକ୍ଷରୁ ଶୁଭିଲା ଶଙ୍ଖଧ୍ୱନି...ଉପରୁ ପୁଷ୍ପବୃଷ୍ଟି ହେଲା....ତା'ପରେ ଶୁଭିଲା ଶିବତାଣ୍ଡବ ସ୍ତୋତ୍ରର ଲଳିତ ଝଙ୍କାର—

ଜଟାଟବିଗଳଜ୍ଜଳ ପ୍ରବାହ ପାବିତ ସ୍ଥଳେ
ଗଳେଽବଲମ୍ବ୍ୟଲମ୍ବିତାଂ ଭୁଜଙ୍ଗ ତୁଙ୍ଗମାଳିକାଂ,



ଡମଡ୍ଡମ ଡମଡ୍ଡମ ନ୍ନିନାଦ ମଡ୍ଡମର୍ବୟଂ
ଚକାର ଚଣ୍ଡତାଣ୍ଡବ ତନୋତୁନଃ ଶିବଃ ଶିବଂ ।.....

-ବିଷ୍କମ୍ଭକ-

## ଦ୍ୱିତୀୟ ଅଙ୍କ

## (୧)

(ଗ୍ରାମ ପଥ । ସରସୀ — ଷୋଳ ବର୍ଷର ସୁନ୍ଦରୀ ଗ୍ରାମ୍ୟ ବାଳିକାଟିଏ । ଗୀତ ଗାଇ ଗାଇ ଫୁଲ ଚାଙ୍ଗୁଡ଼ାଟିଏ ନେଇ ଚାଲିଯାଉଥିଲା । ସମୟ — ସୂର୍ଯ୍ୟୋଦୟର କିଛି ସମୟ ପୂର୍ବରୁ ।)

ଗୀତ

ସକାଳ ପବନ ଥିରି ଥିରି ବହି
ଅଳି କାନେ କହି ଦିଏ, (ଘୋଷା)
ଚୂଆ ଫଗୁଣର କଢ଼ିଟି ଫୁଟିବ
ମନ ପରା ଚାହିଁ ଦିଏ ।୧।
ବାସ ଚହଟିଲେ ଦିଗେ ଦିଗେ ତା'ର
ପାରିବୁନି ଆଉ ଧରି,
ବେଳ ଥାଉଁ ଥାଉଁ ମନ ଭଅଁରାରେ
ଚାଙ୍ଗୁଡ଼ାରେ ନିଅ ଭରି ।
ଭରା ଯଉବନୀ ଫୁଲର ପାଖୁଡ଼ା
ନିମିଷକେ ପଡ଼େ ଝରି ।୨।

ଯୁଗ ଯୁଗର ତୋ ଅକୁହା କଥା ତ

ପଦକରେ ସରିଯାଏ

ସକାଳ ପବନ ଥିରି ଥିରି ବହି

ଅଳି କାନେ କହି ଦିଏ ।

(ପଛରୁ ଆସିଲେ ଗିରିଧାରୀ — ବୟସ ପ୍ରାୟ ୨୦/୨୧ ହେବ ।)

ଗିରି - ହେଁ — ହେଁ...କିଏ ସର କିଲୋ !

ସର - (ପଛକୁ ଚାହିଁ) କିଏ.........ଗିର ଭାଇ ?

ଗିରି - କହୁଛନ୍ତି ତ...କିଲୋ ଏ ସକାଳଟାରୁ ତ କ'ଣ ଫୁଲ ଗୋଟେଇ ବାରେ ଲାଗିଛୁ ?... ଆଉ ମୁହଁରେ ତ ଭାରି ରସରସିଆ ଗୀତ....

ସର - ତୁମର ସେଇ କଥା ଗଲାନାହିଁ ଗିର ଦାଦା....ଏତିକି ଛୋପରା ତୁମେ ?

ଗିରି - ଅଃ, ସେ କଥା କହନା ତୁ ଆଉ । ...ତୋ ମୁହଁରୁ ତ ଖାଲି ରସଂ ଗଳିତଂ....

ସର - ମୋ ମୁହଁରୁ ରସ ବାହାରିଲେ ପିଇ ଦଉନ...କିଏ ମନା କରୁଛି ।

ଗିରି - ହେଲେ ସର...ଓଃ, କ'ଣ କହିବି ତତେ...ଶୟନ ସ୍ୱପନ ଆଉ ନିଦ୍ରା ଜାଗରଣ...ତବସ୍ୱପ୍ନେ ବିତି ଯାଏ ସହି ! ହେଲେ ତୁ କ'ଣ ମୋ କଥା ଟିକିଏ ଭାବୁଛୁ ସର ! ତୋ ମୁହଁରୁ ଏ ଯଉଁ ନିର୍ଝରିଣୀ ଝରି ଯାଉଛି, ଅଥଚ ମୋତେ କ'ଣ ପିଇବାକୁ ମିଳୁଛି ! ଛୁଆଟି ଦିନରୁ ମୁଁ ତ ଏଗାଁକୁ ଆସୁଛି ଆଉ ଦେଖୁଛି ତତେ । କେଡ଼ିକି ଛୋଟରୁ ପୁଣି କେତେ ବଡ଼ ହେଲୁଣି...ହେଲେ ସର ତୋର ରୂପ...ଆହା...ହା କି ସୁନ୍ଦର ! କଳା କଳା ଆଖି...ଟଣା ଟଣା ଭୁରୁ...ନୀଳକସ୍ତୁରୀର



ତାରା...ଖାଲି ପିଇଯିବାକୁ ମନହେଉଛି...(ଟିକିଏ ଘୁଞ୍ଚିଗଲା ତା' ପାଖକୁ ।)

ସର - (ଟିକିଏ ଘୁଞ୍ଚିଯାଇ) ଗିର ଭାଇ । ଏଡ଼ିକି ଛତରା ଟାଏ ତୁମେ ? ପାଠ ପଢ଼ିଛ ପରା ଏତେ ? ବଇଁଶୀ ଭାଇକୁ କୁହ ମୂର୍ଖ ବୋଲି ? ପାଠ ପଢ଼ି କ'ଣ ଏଇଆ ଶିଖିଛ ? ପରଝିଅ ବୋହୁଙ୍କୁ ଏଇମିତିକା ଅସକରା କଥା କହିବାକୁ ଅବଧାନେ ଶିଖେଇଛନ୍ତି ?

ଗିରି - ଟୋକୀର ତ ବେଶ୍ ଧର୍ମଜ୍ଞାନ ଅଛି ଦେଖୁଛି ?...ହେଁଃ...ବଇଁଶୀ ଖାଲି ମହମହ ବାସୁଛି କିଲୋ.....ତା'ପାଖରେ ତ ବେଶ୍ ପଡ଼େ ।

ସର - ପଡ଼େ...! ମାନେ ?

ଗିରି - ମାନେ ! ....ପଚାରୁଛୁ ମତେ ? ହଁ...ହଁ ନପଚାରିବୁ କାହିଁକି ? ବିଲେଇତ ଆଖି ବୁଜି ବୁଜି ଦୁଧ ପିଉଛି ।

ସର - ସାବଧାନ ଗିର ଭାଇ, ଏଇ ଥର ଯା' କହିଲ ସହିଗଲି । ବାପା-ମା ନାହାନ୍ତି ବୋଲି କ'ଣ ମୁଁ ବେମୁରବୀ ହୋଇଯାଇଛି ?

ଗିରି - ହଇଲୋ ଟୋକୀ, ତୋ'ର ତ ଭାରି ବହପ ଦେଖୁଛି ? ମୋତେ କହୁଛି ସାବଧାନ...କିଲୋ ସଙ୍ଗତରେ ରହି ତେଲ ବଢ଼ିଗଲାଣି କି ?

ସର - କ'ଣ ବଢ଼ନ୍ତା ନାହିଁ କି ? ତୁମେ ଖାଲି କହିଯା'ନ୍ତ ମୁଁ ସହିଯାନ୍ତି ? ନାଇଁ...? କି...କାହିଁକି ଏତେ ଗରବ....ପେରମ ଯଦି ଏତେ ଉଛୁଳି ପଡୁଛି ତେବେ ବାହା ହେଇ ପଡୁନ ଗୋଟେ । ତୁମେ ମତେ କହିବାକୁ କିଏବା ?

ଗିରି - ମୁହଁ ସମ୍ଭାଳି କଥା କହ, କହିଦେଉଛି ।

ସର - ମାରିବ ନା କ'ଣ ?

ଗିରି - ତୋତେ କ'ଣ ପୂଜା କରନ୍ତେ ?

ସର - କରୁନ ଯଦି ମନହେଉଛି....

ଗିରି - ହଁ...ତୋତେ ପୂଜା କରିବି...ତୋତେ ପୂଜା କରିବି...ହଇଲୋ ଟୋକି ! ତୋତେ ପୂଜା କରିବି ? (ମାରିବାକୁ ଦୌଡ଼ିଗଲା ।)

(ଅପର ଦିଗରୁ ପ୍ରବେଶ କଲେ ହଟନାଗର — ବୟସ ବଢ଼ିଯାଇଛି । )

ହଟ - କିଏରେ...ଲାଲା ପୁଅ ! ...(ମାରିବାକୁ ଯାଉଥିବା ଦେଖି) ଆରେ, ଆରେ ଏକ'ଣ ? କନିଆରୀ ଝିଅଟାକୁ ମାରିବାକୁ ଯାଉଛୁ ? କିରେ କଥା କ'ଣ ଲାଲା ପୁଅ !

(ଗିରିଧାରୀ କ୍ଷାନ୍ତ ହେଲେ । ସରସୀ କିଛି କହିବାକୁ ଯାଉଥିଲା ।)

ଯା-ଯା-ମା, କିରେ ବଡ଼ିସକାଳୁ ଫୁଲ କ'ଣ କରିବୁ କି ?

ସର - ବଇଂଶୀ ଭାଇଙ୍କର ''ମୋଗଲ-ତାମସା'' ପୋଥିଲେଖା ପରା ଆଜି ବଢ଼ିଛି ସେଇଥିପାଇଁ ହଟନାଗରଙ୍କ ପାଖରେ ବଡ଼ଭୋଗ ହବ ଯେ ଫୁଲ ତୋଳି ଆସିଥିଲି...ଦେଖୁନା ଗିରଭାଇ ସକାଳୁ ଆସି ମୋ ସାଙ୍ଗରେ କିମିତି....(ଗିରିଧାରୀ ଡରିଗଲା । କାଳେ ସରସୀ କହି ଦବ ! କିନ୍ତୁ ସରସୀ ଜାଣିପାରି ମୁଁହ ମୋଡ଼ି ଦେଇ ଗଲାବେଳେ କହିଲା) ନାହିଁମ, ଗିରଭାଇ, ଚୁଚୁନ୍ଦ୍ରାକୁ ମାରିଲେ ହାତ ଗନ୍ଧେଇବ....

ଗିରି - ଟୋକିଟାର ତ ଭାରି ବହପ ହଟଦାଦା !

ହଟ - ତୁ କହନା ଲାଲାପୁଅ ! ନଟବରର ଭାଣିଜି ହେଇ ଏରଟା ଇମିତି କାହିଁକି ହେଲା କେଜାଣି ? ଷୋଳସତର ବରଷର ଆସି ହେଲାଣି ଲାଜ ନାହିଁ କି ସରମ ନାହିଁ, ଦାଣ୍ଡଟାରେ ଫରଫର ହେଇ ସବୁବେଳେ ଟୋକାଙ୍କ ଆଗରେ...ଦିହରୁ ମୁଣ୍ଡରୁ ଲୁଗା ବି ବେଳେବେଳେ ଖସିଯାଇଥିବ....ସଦାବେଳେ ବଇଁଶୀ ପାଖରେ । ଛୁଆଟି ବେଳେ କି ଧୀର ଥିର ଥିଲା । ନଟ ଟିକିଏ ଢ଼ିଲା କରିଦେଲା । ତା'ରି ଫଳ ଫଳୁଛି । କିଲୋ ତୁ ଗୋଟାଏ କନିଆରୀ ଝିଅ, ଆଜି ଛାଡ଼ି କାଲି ଶାଶୁଘରକୁ ଯିବୁ । ଟୋକାଟା ସାଙ୍ଗରେ ତୋର ଗୋଟାଏ ଭାବ କ'ଣ ? ରମାଟା ବି ତାକୁ ପ୍ରଶ୍ରୟ ଦେଉଛି । ହେଲେ ରମାବୋଉ ଥିଲେ ଆଜି କ'ଣ ଏଇଆ ହଉଥାନ୍ତା ? ଫାଡ଼ି ଦିଅନ୍ତା ନାହିଁ ଗୋଡ଼ ଆଡ଼ୁ !

ଗିରି - ବାସ୍ତବିକ ହଟଦାଦା ଟୋକୀଟା ଏମିତି ବୋଲି ଜାଣିଥିଲେ ମୁଁ କଦାପି ଆଗରୁ ତା'ସାଙ୍ଗରେ କଥା ବି କହି ନଥାନ୍ତି । ବଇଁଶୀ ଘରକୁ ତ ଟିକିଏ ଯିବା ଆସିବା କରେଁ....ସେଇଠି ସେ ମୋତେ ଗିରଭାଇ ବୋଲି ଡାକେ...ଆଜି ବଇଁଶୀର ପୋଥି ବଢ଼ୁଛି କିନା ମୋତେ ଆସିବା ପାଇଁ କହିଥିଲା କାଲି । ତେଇଁକି ଆଜି ସକାଳୁ ମୁଁ ଉଠି ନିତ୍ୟକର୍ମ ସାରି ଆସୁଛି, ବାଟରେ ଯାସାଙ୍ଗେ ଦେଖା । ଏଟାର ପୁଣି ଏମିତି କୁମତଲବ୍...ମୋତେ ଡାକି ପୁଣି ମୋ ହାତଟାକୁ...ଛି ଛି କହିଲେ ପାପ ହେବ...

ହଟ - (କାନରେ ଆଙ୍ଗୁଳି ଦେଇ) ହର, ହର...ବାବା ହଟନାଗର କି ପାପ, କନିଆରୀ ଝିଅଟା ହେଇ ପୁଣି ପରପୁରୁଷର ହାତ ଧରିଲା । ଓଃ, କି ଭୟଙ୍କର ପାପ ! ତୁ କହନା ଆଉ ବାପ — ବୁଝିଲୁ ସେ ଟୋକିଟାର ଛାଇରେ ଆଉ ବାଟ ଚାଲିବୁ ନାହିଁ । ....ହଁ....ଆରେ ଏ ବଇଁଶୀ କି କବି ବୋଲାଉଛିରେ । ଶାରଳା ଦାସ, ଜଗନ୍ନାଥ ଦାସ — ଏ ସିନା ମହାଭାରତ, ଭାଗବତ ଲେଖି କବି ହୋଇ ନାଁ

ତାମସା ଲେଖି କି କବି ବୋଲାଉଛିରେ.....ଛି କର ସେଗୁଡ଼ା ପୁଣି ଯେ କି ଭାଷା — ଗୋଟେ ପଦବି ବୁଝି ହଉନି । ପୁଣି କହୁଛି କଣନା ହଟନାଗର ମୋତେ ବର ଦେଇଛନ୍ତି । ଆରେ ଗଜମୂର୍ଖତ ଥିଲା । ସମେସ୍ତ ଯେମିତି ଦୁବ୍‌ଦୁବ୍ ଖିନ୍‌ଖିନ୍ କଲେ ସେମିତି ଗୋଟାଏ ବୁଦ୍ଧି ପାଞ୍ଚି ଆବୁରୁଝାବୁରୁ ବସି ମେଞ୍ଚେ ଲେଖିଲା । କଣନା... ମୁଁ କବି । ଆରେ କବି ହେଲୁତ କ'ଣ ଲେଖିଲୁ କିଛି ବୁଝିହେଲା ନାହିଁ । ଜନ-ମାନିତ ବୁଝିପାରିଲେ ନାହିଁ । ସେ ଲେଖିବାର ମୂଲ୍ୟ କ'ଣ ? ତୁ ତ ପଢ଼ାଶୁଣା ଜାଣୁ, କହିଲୁ ।

ଗିରି - ନାଇଁ ଦାଦା, ସେଗୁଡ଼ାକ ଆବୁରୁଝାବୁରୁ ନୁହେଁ । ଶୁଦ୍ଧ ପାରସୀ ଭାଷା..ବଇଁଶୀ ବାସ୍ତବରେ ହଟନାଗରଙ୍କଠାରୁ ବର ପାଇଛି । ନୋହିଲେ ତିନିଟା ଦିନରେ ପାରସୀ ପରି ଭାଷାରେ ଏପରି ଅଗାଧ ପାଣ୍ଡିତ୍ୟ ଲାଭ କରିବା ସହଜ କଥା ନୁହେଁ ।

ହଟ - ଫାର୍‌ସୀରେ ଲେଖି ଲାଭବା କ'ଣ ହେଲା ? ନିଜେ ଲେଖି ନିଜେ ବୁଝିବ । ଏଇଥିରେ କ'ଣ କବି ବୋଲେଇବ ?

ଗିରି - ନାଇଁ ହଟଦାଦା, ଆମେ ସିନା ବୁଝି ନପାରୁଛେଁ...ହେଲେ...

ହଟ - ହେଲେ କ'ଣରେ ଆଉ ? ମୁଁ କହୁଛି ସେଟାକୁ ମୋଟେ କିଛି ଆସେ ନାହିଁ । ଖାଲି ଭଣ୍ଡାମି ।

ଗିରି - ତୁମେ ତ ଜାଣିଛ ମୋଗଲମାନେ ଅଭିକା କିମିତି ଗାଁ ଗାଁରେ ବୁଲି ଲୋକଙ୍କୁ ସବୁ ଜବରଦସ୍ତି ପଠାଣ କରୁଛନ୍ତି । ଝିଅବହୁଙ୍କ ଇଜତ୍ ସବୁ ନଷ୍ଟ କରୁନ୍ତି । ଦେବଦେବୀଙ୍କର ମନ୍ଦିର ଭିତରେ ପଶି ବିଗ୍ରହ ସବୁ ଧ୍ୱଂସ କରୁଛନ୍ତି...?



ମଲାଠୁଁ ତ ରାଜ୍ୟକୁ ଶନିସପ୍ତା ପଡ଼ିଲା ।

ଗିରି - ସେଇସବୁ ଅତ୍ୟାଚାର କିମିତିକା ନିବାରଣ ହେବ, ସେଇଥି ପାଇଁ ହଟନାଗରଙ୍କ ଆଦେଶ ମତେ ବଇଁଶୀ ପାରସୀଭାଷାରେ ସେଇ ମୋଗଲ, ପଠାଣମାନଙ୍କ ଦୋଷତ୍ରୁଟିସବୁ ଏଇ "ମୋଗଲ-ତାମସା"ରେ ଦେଖେଇଛି । ହୁଏତ ଯା ଦ୍ୱାରା ସେମାନଙ୍କର ମନରେ ପରିବର୍ତ୍ତନ ହୋଇପାରେ । ସେମାନେ ଠିକ୍ ବାଟକୁ ଆସିପାରନ୍ତି । ଏଇତ ଆଜି ପୋଥିଲେଖା ଶେଷ ହେଲା । ଆଜିଠାରୁ ବୋଧହୁଏ ଆଖଡ଼ା ଚାଲିବ । ବଢେ ଦେଖିବ ଯେ ତାମସାଟା ।

ହଟ - ଆରେ ବୁଝିତ ପାରିବି ନାହିଁ । ଦେଖି ବା ଲାଭ କ'ଣ ? କାଲ ଆଗରେ ମୂଳା ଚୋବେଇବା ପରି ଲାଗିବ ।

ଗିରି - ତୁମେ ସିନା ପାରସୀ ଭାଷା ଜାଣ ନାହିଁ । ଅନେକ ଲୋକ ଜାଣିଛନ୍ତି । ଏଇନେତ ସେଇଟା ଦେଶଭାଷା । ମୁଁ ତୁମକୁ ବୁଝାଇ ଦେବି ଯେ ।

ହଟ - ରମା କ'ଣ ଏ ଭାଷା ଜାଣେ ?

ଗିରି - ଆଉ କ'ଣ ? ରମାନନା, ରାଧାନନା ହେରିକା ସମସ୍ତେ ପରା ଜାଣିଛନ୍ତି । ରମାନନା ପରା ବାଦଶାଙ୍କ ଠାରୁ "ବିଦ୍ୟାସାଗର" ଉପାଧି ପାଇଛି ପାରସୀ ଭାଷାରେ ! ରାଧାନନାତ ଏଇନେ କଟକରେ କାଜି ହେଇଛି । ସେତ କଥାବାର୍ତ୍ତା କରୁଛି ସେଇ ପାରସୀ ଭାଷାରେ । ତୁମେ ଏପର୍ଯ୍ୟନ୍ତ କ'ଣ ସେକଥା ଜାଣିନାହଁ ?

ହଟ - ନାଇଁରେ ବାପା, ମୋର ସବୁ ଏତେ କଥା କିଏ ଜାଣେ ? ଜାଣନ୍ତି ନାହିଁନା, ହେଲେ ତୋ ଖୁଡ଼ି କ'ଣ କରେଇ ଦଉଛି ? ଦାଣ୍ଡକୁ ପରା ଟିକିଏ ଛାଡୁନାହିଁ ? ଏଇ ପୋଖରୀପାଣି ଆସିଛି ଯେ କହିକି ଆସିଛି ।

ଗିରି - (ହସି) ଖୁଡ଼ିତ ତୁମକୁ ତା'ହେଲେ ରୀତିମତ ଛାତ୍ର ବନେଇ ସାରିଲେଣି । ପିଲାମାନେ ୧,୨ କହି ପରିସ୍ତାକୁ ଆଉ ପୋଖରୀପାଣି ଯେପରି ଯା'ନ୍ତି, ତୁମେ ତ ଠିକ୍ ସେହିପରି ତାକୁ କହିକି ଆସୁଛ ।

ହଟ - ହଁରେ ବାପ ! ତା ନୁହେଁ କ'ଣ ? ଗୀତା ଭାଗବତ ଚର୍ଚ୍ଚା ମନ୍ଦିରରେ ଟିକିଏ ଏଇନା ହଉଛି ଭଲଭାବରେ । ଆଗରୁ ଖସି ଯାଉଥିଲି । ହେଲେ ଏଖିଣିକା କ'ଣ ଯାଇପାରୁଛି ? ମୋ କପାଳ କଥା ବାପ କପାଳ ! ତାକୁ ନକହି ଆଉ କାହାକୁ କହିବି ?...ହଉ...ହଉ ଯା, ଯା ବାପ ବଉଁଶୀ ଅନେଇଥିବ । ମତେ ବି ଟିକିଏ ଡଲବ ଦେଖେଇଲାଣି ।

ଗିରି - ହଉ ଯ' ତୁମେ (ହଟନାଗର ଚାଲିଗଲେ ।)...ହଉ ରହ ରହ ଲୋ । ଟୋକି, ତୋତେ ଯଦି ମୁଁ ବାହା ନ ହେଇଛି, ମୋ ନାଁ ଗିରିଧାରୀ ଲାଲା ନୁହେଁ । ହଁ....(ଚାଲିଗଲା ।)

-ପରଦା-

(୨)

(ରମାବଲ୍ଲଭଙ୍କର ଗୃହ । ସମୟ ସନ୍ଧ୍ୟା । ଘରେ ସନ୍ଧ୍ୟା ବତୀ ଦେଇ ଚାଲିଯାଉଥିଲେ ସୁମତୀ — ରମାବଲ୍ଲଭଙ୍କ ସ୍ତ୍ରୀ । ପଛରୁ ଡାକିଲେ ବଂଶୀବଲ୍ଲଭ ୨୧ ବର୍ଷ ବୟସ - – କବି । )

ବଂଶୀ - ଭାଉଜ !

ସୁମତୀ - କିଏ ? ବଂଶୀ ! କ'ଣ କହୁଛ ?

ବଂଶୀ - କହୁଥିଲି କ'ଣ କି...(ଛେପ ଢ଼ୋକି) ଆଖଡ଼ା ହେବାକୁ ଯାଗା ନାହିଁ ଯେ — ଏଇ ଆମ ବଙ୍ଗଳାରେ କରିବା ପାଇଁ ନଟ ଦାଦି, ଗିରିଧାରୀ ଆଉ ଜଗବନ୍ଧୁ ହେରିକା କହୁଛନ୍ତି...ହେଲେ ତୁମକୁ ନପଚାରି ମୁଁ ତ ତାଙ୍କୁ କିଛି କହି ପାରୁନାହିଁ ।

ସୁମତି - ନନାଙ୍କୁ ପଚାରିଲ ନାହିଁ ?

ବଂଶୀ - ସେ କହିଲେ ତୁମକୁ ପଚାରିବା ପାଇଁ ।

ସୁମତୀ - ମୁଁ କ'ଣ କେବେ ତୁମକୁ କୌଣସି କଥା ମନା କରିଛି ? ହେଲେ ଯେମିତି କଳି ନ ହୁଏ । ସେ ସବୁ ଭାରି ଖରାପ କଥା ବଂଶୀ ! ୧୦ ଜଣ ମିଳିମିଶି କାମ କରିବା ଭଲ । କିନ୍ତୁ କଳି ଲାଗି ଯଦି ମନୋମାଳିନ୍ୟ ଘଟେ, ତେବେ ନାନାଦି ବିଭ୍ରାଟ ହୁଏ....

ବଂଶୀ - ନାଁ...ତା' ହବ କାହିଁକି ? ସବୁତ ଆମ ସାହିଲୋକ । ତା'ପରେ ଗିରିଧାରୀକୁ ତ ତୁମେ ଜାଣ । ସେ କେମିତି ଶାନ୍ତ ଶିଷ୍ଟ ପିଲା । ଜଗବନ୍ଧୁତ ସହଜେ ମୋ ଭଣଜା — ।

ସୁମତି - ନାଁ ବଂଶୀ, ଗିରିଧାରୀକୁ ତୁମେ ଆଉ ସାଙ୍ଗରେ ରଖ ନାହିଁ ।

ବଂଶୀ - କାହିଁକି ? (ଆଶ୍ଚର୍ଯ୍ୟରେ ।)

ସୁମତି - ମୁଁ ତ ମନା କଲି....ତା ଚରିତ୍ର ଭଲ ନୁହେଁ....

ବଂଶୀ - ଏ କ'ଣ କହୁଛ ତୁମେ ଭାଉଜ ? ଗିରିଧାରୀର ଚରିତ୍ର ଭଲ ନୁହେଁ ।

ସୁମତି - ମୁଁ କ'ଣ ତୁମ ପାଖରେ ମିଛ କହୁଛି ବଂଶୀ ! କେବେ ମିଛ କଥା ମୋ ଠାରୁ ଶୁଣିଛ...?

ତୁମେ ଜାଣିଲ କିପରି ?

ସୁମତି - ସର କହୁଥିଲା.....

ବଂଶୀ - (ଆଶ୍ଚର୍ଯ୍ୟରେ) ଏଁ ସବ୍ କହୁଥିଲା....ଗିରିଧାରୀର ଚରିତ୍ର ଭଲ ନୁହେଁ !

ସୁମତି - ଗିରିଧାରୀକୁ ମନା କରିଦିଅ ବଂଶୀ, ସେ ଆଉ ଏଠିକି ନ ଆସୁ । (ଚାଲିଗଲେ ।)

ବଂଶୀ - (ସ୍ୱଗତଃ) ଏତ ଆଶ୍ଚର୍ଯ୍ୟର କଥା...ଗିରିଧାରୀର ପୁଣି ଏ ଅଧଃପତନ କିପରି ହେଲା ? ସୁମତି ଭାଉଜ ତ ମିଛ କଥା କହିବନି । ନିଶ୍ଚୟ ଏଥିରେ କିଛି ରହସ୍ୟ ଅଛି । (ଗିରିଧାରୀ ପହଞ୍ଚିଲା ।)

ଗିରି - କେଉଁଥିରେ ରହସ୍ୟ ଅଛି କି ବଂଶୀ ?

ବଂଶୀ - ଆରେ, ଗିରିଧାରୀ, ତୁ ବହୁତ ଦିନ ବଞ୍ଚିବୁରେ । ତୋ କଥା ତ ପଡ଼ିଥିଲା ଏଇନେ ।

ଗିରି - ମୋ ଉପରେ ତ ଭାରି ସ୍ନେହ ଦେଖୁଛି ।

ବଂଶୀ - କ'ଣ କରିବା କହିଲୁ....(ଧୀରେ ଧୀରେ) ଭାଉଜ ମନା କଲେ ଏଠି ଆଖଡ଼ା କରିବାକୁ । କରିବା କ'ଣ ତେବେ ?

ଗିରି - ତୁମ ଗାଁରେ କ'ଣ ଆଉ କେଉଁଠି ନାହିଁ ଜାଗା ଟିକିଏ ? ଚଉପାଢୀକୁ ଚାଲୁନ ।

ବଂଶୀ - ଆରେ ସତେ ତ ? ଏତେବେଳ ପର୍ଯ୍ୟନ୍ତ ମୋର ଖିଆଲ ନ ଥିଲା ।

ଗିରି - ଆରେ ମୁଁ ପରା ଜାଣେ — ଭାଉଜ ଘରେ ଆଖଡ଼ା କରିବାକୁ, ମନା କରିବେ । ସେଇଥି ପାଇଁ ମୁଁ ବାଟରେ ଭାବିଭାବି ଆସୁଥିଲି ।



ବଂଶୀ - ତୁ ଜାଣୁ ? (ଆଶ୍ଚର୍ଯ୍ୟ ହୋଇ ଅନ୍ୟମନସ୍କ ହେଲେ ।) ହଉ ଚାଲ୍ । ନଟ ଦାଦି ଘରେ ବାୟାଁ ହେରିକା ଅଛି । ତୁମେ ସବୁ ଠିକ୍ କର ମୁଁ ଟିକିଏ ପରେ ଯାଉଛି....ମୋର ବି ତ ଯିବାର ଦରକାର ନାହିଁ । ତୁମେ ହେଲ ହର୍ତ୍ତା....କର୍ତ୍ତା....ମୁଁ ଯା କେବଳ ବିଧାତା, ନାଁ କ'ଣ....ହଉ ଚାଲ....

ଗିରି - କିରେ ପୋଥିଟା ଦେଉନୁ ?

ବଂଶୀ - ଆରେ ସତେ ତ ଭୁଲି ଯାଇଥିଲି । (ଘର ଭିତରକୁ ଗଲେ । ଏହି ସମୟରେ ପ୍ରବେଶ କଲା ସରସୀ । ଗିରିଧାରୀକୁ ଦେଖି ସେ ଟିକିଏ ଚମକି ପଡ଼ିଲା । ତା'ପରେ ଭିତରକୁ ଚାଲିଗଲା । ଗିରିଧାରୀ ଟିକିଏ ଗଳାଖଙ୍କର ମାରିଦେଲା । ତା'ପରେ ବଂଶୀ ପହଞ୍ଚିଲେ ପୋଥିବିଡ଼ା ହାତରେ ଧରି ।) ଏଇନେ ତୁ ଯା.....(ଗିରିଧାରୀ ଚାଲିଗଲା । ପହଞ୍ଚିଲେ ସରସୀ ଓ ସୁମତି )

ସୁମତି - ଗିରିଧାରୀ ଆସିଥିଲା ବଂଶୀ !

ବଂଶୀ - (ତଳକୁ ମୁହଁ ପୋତି ।) ହଁ ।

ସୁମତି - ମୁଁ ପରା ମନା କରିଥିଲି ।

ବଂଶୀ - ନାଇଁ, ଆଖଡ଼ା ତ ଏଠି ହବ ନାହିଁ....ଚତୁଷ୍ପାଠୀରେ ହେବ । ସେଠିକି ଯଦି ସେ ଯାଏ ତେବେ....

ସୁମତି - ନାଁ...ସେଠିକି ଗଲେ ମୋର କିଛି ଆପତ୍ତି କାହିଁକି ହେବ ? ସେ ତ ହେଲା ସମସ୍ତଙ୍କର । ମୋର ନିଜର ତ ନୁହେଁ ଯେ ମୁଁ ମନା କରି ଦେବି....ତେବେ ଏଠିକି ଯେପରି ପୁଣି ଥରେ ସେ ନ ଆସେ । ତାକୁ ମନା କରିଦେବ । (ସୁମତି ଚାଲିଗଲେ ତାଙ୍କ ପଛେ ପଛେ ସରସୀ ଚାଲି ଯାଉଥିଲେ ।)

ବଂଶୀ - ସର ! (ସରସୀ ଫେରିଆସିଲେ ।)

ବଂଶୀ - ତୋତେ ଗୋଟେ କଥା ପଚାରିବି କହିବୁ ?

ସୁର - ଜାଣିଥିଲେ କହିବି ।

ବଂଶୀ - ଗିରିଧାରୀ ତୋତେ କ'ଣ କହିଲା କି ?

ସର - (ଅଳ୍ପହସି) ସେ କଥା କହିଲେ ?

ବଂଶୀ - ନାଇଁ ଏମିତି ପଚାରି ଦେଲି ।

ସର - ଯଦି ନ କହେଁ....

ବଂଶୀ - ସର !

ସର - ନାଇଁ, ମୁଁ କହିବି ନାହିଁ....(ଚାଲିଗଲା । ବଂଶୀ ଚାହିଁ ରହିଲେ ତା'ପରେ ନିଜର ବ୍ୟାସାସନରେ ଥିବା ପୋଥି ଉଠାଇଆଣି ପ୍ରଥମେ ଜୁହାର ହେଲେ । ତା'ପରେ ଲେଖିବା ଆରମ୍ଭ କଲେ । ତେଣେ ଶୁଭିଲା ଅନ୍ତରାଳରୁ ବୈଠକି....ଶିବ ସ୍ତୁତି ।)

ମଦନ୍‌କୋ ବିନାଶନ୍ ଝରତୁଝର୍ ଅଗନ ଗନ୍ ଜଟାଜୁଟ

ଜଟିତପର ଗଙ୍ଗରାଜେ ।

ଫୁଫୁକର ଫନିନାଫନ୍ ଟଲନ୍‌ଟଲ ରହେ ଲୋଚନ ।

କଣ୍ଠପର ରୁଦ୍ରାକ୍ଷ ସାଜେ ।୧।

ପତିତ ଉଦ୍ଧାରନ କଲୁଷ କୋ ବିମୋଚନ ପଶୁପତ୍

ତ୍ରିଶୁଳ ଯୋତ ବିଦୁଲାଜେ ।

ରୂପନିନ୍ଦିତ ମଦନ ଗରଲ କିନୋ ଭସ୍ମ ବୃଷପର

ଢଲନଢଲ ଆପ୍‌ରାଜେ ।୨।

ଭୂତ ବେତାଲଗନ ଗାଓ୍ୱେଁ ବଜାଓ୍ୱେଁ ମଗନତଟକାର

ଥେଇତଥେଇ ତାନ ବାଜେ ।

ଦୀନ ବଲ୍ଲଭ୍ ଦୁଃଖ ହରହର ହଟନାଗର

ଶରନ ସେ ଚରନ ଯୁଗ ରଜେ ।୩।

ଚଢ଼େ ବୈଲ୍ ପର୍ ଶୋହେ ଗଙ୍ଗ ଶିର୍ ପର୍

ଫୁଫୁ କର ଫଫ କତ ଗଲେ ବ୍ୟାଲମାଲା ।

ଦ୍ରିଗନପର ଧଧକତ୍ ଅଗନକନ୍ ଡମ୍ବରୁ ଦଣ୍ଡ

ସୋହେତ କଣ୍ଠେ ବ୍ୟାଘ୍ର ଛାଲା ।୪।

ଜଟାଜୁଟ ଶେଖର୍ ଧାତୁରା ସେବନ୍ ପର୍ ଗରଲ୍‌କୋ

ସଦାହର୍ ଖାଓ୍ୱେଁ ଭସ୍ମଗୋଲା ।

ଦୀନ୍‌କେ ଦୁଃଖହର୍ ଦୁଷ୍ଟକୋ ସଙ୍କଟକର

କହେ ବଂଶୀବଲ୍ଲଭ ତୁହି ବୈଲ୍ ଓ୍ୱାଲା....।୫।

(ବୈଠକି ସରିଗଲା । ବଂଶୀବଲ୍ଲଭ ଲେଖୁଥାନ୍ତି ଏବଂ ଗାଉଥା'ନ୍ତି.....)

ବଂଶୀ - ତୁହି ଆଦି ଦାତା ନିଦାନ୍ କୋ ବକ୍ତା ।

ପ୍ରଲୟକୋ ବିଧାତା ତୁହି ଜ୍ଞାନ ଓ୍ୱାଲା ।୧।

ତ୍ରିଭୁବନ କି କରତା ତୁହି ଭୋଗ ହର୍ତ୍ତା ।

ବିଜୟକୋ ଭୋକ୍ତା ତୁହି ମତଓ୍ୱାଲା ।୨।

ତ୍ରିଶୁଲକୋ ଧରେୟା ବୃଷଭ ପର ଚଢ଼େୟା ।

ଅଜବ ହୈ ରଙ୍ଗେୟା ତୁହି ତେଜ ଓ୍ୱାଲା ।୩।

ଡମ୍ବରୁକୋ ଧରେୟା ତାଣ୍ଡବକୋ ନଚେୟା ।

କହେ ବଂଶୀବଲ୍ଲଭ ଦୀନକୋ ଦୁଃଖ

ହରହର ହଟନାଗର ହେ ବୈଲ୍‌ଓ୍ୱାଲା....।୪।

(ପ୍ରବେଶ କରି) ପୋଥିଲେଖା କ'ଣ ସରିବ ନାହିଁ ବଂଶୀ !

ବଂଶୀ - (ପୋଥି ବନ୍ଦ କରି) ନାଇଁ ଭାଉଜ, ସଞ୍ଜବେଳେ ମନହେଲା ଯେ ଲେଖିଦେଲି ଦି'ପଦ ସ୍ତୁତି । ଏଇତ ସରିଗଲାଣି, କ'ଣ କହୁଥିଲ କି ?

ସୁମତି - ନନା ତ କାହିଁ ଏତେ ବେଳଯାଏ ଆସିଲେ ନାହିଁ । ଭାତ ଦି'ଟା ଛୁଆଟା ରାନ୍ଧିଥିଲା ଯେ, ଶୁଖିବାକୁ ବସିଲାଣି । ଗଲ ଡାକି ଆଣିବ...ମନ୍ଦିରରେ ଥିବେ କି କ'ଣ ।

ବଂଶୀ - ଛୁଆଟିଏ କିଏ ରାନ୍ଧିଛି କି ଭାଉଜ !

ସୁମତି - ତମେତ ଫଟେଇବ ଏଇନେ । ସର ରାନ୍ଧିଛି ପରା ।

ବଂଶୀ - କି ତମକୁ କ'ଣ ଆସେ ନା ଭାଉଜ !

ସୁମତି - ପାରିବି ନାହିଁ ତମକୁ ବଇଁଶୀ ! ତମେ ଗଲ ଡାକି ଆଣିବ ।

ବଂଶୀ - (ପୋଥି ରଖିଦେଇ ହସିଲେ) ହଉ ହଉ ନକୁହ ଭାଉଜ, ନନାଙ୍କ ପାଖରେ କହିଦେବି ଯେ — ଭାଉଜ ପାରୁ ନାହାନ୍ତି — ଜଣେ ରୋଷେୟାଣୀ ରଖିଲେଣି ।

ସୁମତି - ତମ ନନା ତା'ହେଲେ ଏଇଥର ମୋତେ ଘରୁ ବାହାର କରି ଦେବେ । ନାଇଁ ?....(ରମାବଲ୍ଲଭଙ୍କର ପ୍ରବେଶ)

ରମା - କ'ଣ କହୁଛ କି ସୁମ ?

ସୁମତି - (ଲାଜେଇ ଯାଇ) ତୁମ ଭାଇଙ୍କ ଗୁଣ କଥା ଆଉ କ'ଣ ?

ବଂଶୀ - ନନା, ଭାଉଜ ଆଉ ରାନ୍ଧୁନାହାନ୍ତି । ଜଣେ ପୁଝାରି ରଖିଲେଣି ।

ସୁମତି - ଶୁଣ କବିଙ୍କ କଥା ।

ରମା - ପୁଅ ନା ଝିଅ ମ' ?



ସୁମତି - ତୁମେ ବ ପାଗଳା ହେଲ । ରାନ୍ଧୁଥିଲି । ସର ଲଗେଇଲେ ଯେ ତାଙ୍କୁ କାମଟା ଦେଇଦେଲି...ସେଇଠୁ, ତୁମ ଗୁଣବନ୍ତ କବି ଫଟଉଛନ୍ତି...କିଏ ରାନ୍ଧିଲା...କାହିଁକି ରାନ୍ଧିଲା...?

ରମା - ଓଃ... ଏଇ କଥା ତା'ହେଲେ ! ଚାଲ ବାଡ଼ିବ ଚାଲ । ଚାଲ୍‌ରେ ବଂଶୀ (ସୁମର ପ୍ରସ୍ଥାନ)

ବଂଶୀ - ନନା, ଚତୁଷାଠୀ ହେଇ ଆସିଲ କି ?

ରମା - କାହିଁକିରେ ?

ବଂଶୀ - ଆଖଡ଼ା ହେଉଥିଲା ଯେ...

ରମା - ଆଖଡ଼ା ତ ସରିବାକୁ ହେଲାଣି । ଆଜି ତ ଯୋଗୀ ତାମସା ହେଉଥିଲା ନା କ'ଣ ?

ବଂଶୀ - ଜଗବନ୍ଧୁ କ'ଣ ଘରକୁ ଚାଲିଗଲାଣି ?

ରମା - ଡାକିଲି ତ । ଆସିଲା ନାହିଁ । ବାଙ୍କାରୁ ଦି' ଜଣ ଲୋକ ଆସିଥିଲେ । ତାଙ୍କରି ସହିତ ଚାଲିଗଲା । (ନଟର ପ୍ରବେଶ) କିଏ ନଟବା ?......

ନଟ - ହଁ, ଏଇତ ଆଖଡ଼ା ଭାଙ୍ଗି ଆସିଲୁଁ । ସର ଯିବ ନା କ'ଣ ? (ନଟ ଆସିବା କ୍ଷଣି ସୁମତି ଚାଲିଗଲେ ଭିତରକୁ ।)

ରମା - ନା ଆଉ କାହିଁକି ଯିବ ? ପିଲାଟା ଗଣ୍ଡେ ଖାଇଦେଇ ଶୋଇ ପଡ଼ିବ ଏଇଠି । ତୁମେ ଯାଅ...ନା କ'ଣ କହୁଛ ?

ନଟ - ତା ମାଇଁତ ଏଇଠି ଛାଡ଼ି ଦେଇ ନିଶ୍ଚିନ୍ତ । ଆମ ବୋହୂଟି ଯେମିତି, ତା ପାଖରୁ କ'ଣ ଝିଅବୋହୂ ସହଜରେ ଯିବାକୁ ମଙ୍ଗିବେ ? ହଉ ଥାଉ ମୁଁ ଯାଉଛି । ଚାଲିଗଲେ ।

ରମା - ଚାଲିରେ ବଂଶୀ....

- ପରଦା -

(୩)

(ହଟନାଗରଙ୍କର ଗୃହ ଅଗଣା — ସୀତାମଣି ଦୁମ୍‌ଦୁମ୍ ହୋଇ ଚାଲି ଯାଉଥିଲେ — ସମ୍ମୁଖପଟରୁ ଆସୁଥିଲେ ହଟ । )

ହଟ - ଆସ୍ତେ...ଆରେ ବାବାରେ, ଖୁରା ପକେଇ ଥିଲା ତ !

ସୀତା - (ଅଟକି ଯାଇ) ଯା — ହଉଲୋ ଛଟକ ! କହିମି ନାହିଁ.....ନା କହିନେ ଏ ଘରେ ରହିମି ନାହିଁ....

ହଟ - କ'ଣ । କଥା କ'ଣ ଦେବି ଚଣ୍ଡିକେ !

ସୀତା - ନିଆଁ...ପାଉଁଶ ! ମତେ ଏସବୁ ଭଲ ଲାଗୁ ନାହିଁ...

ହଟ - ଭଲ ଲାଗିଲା ନାହିଁ ଫେର୍ କ'ଣ ? ସବୁତ ଭଲ ଅଛି ! କିସୁନ୍ଦର ପାଗ, କି ସୁନ୍ଦର ଆକାଶ, କି ସୁନ୍ଦର ଏ ଘର ଅଗଣା — ଆହୁରି... କି ସୁନ୍ଦର ତୁମ ସେଇ ଗୋଲ ମୁହଁଟା...ମତେତ ବେଶ୍ ଭଲ ଲାଗୁଛି ।

ସୀତା - ଲାଜ ନାହିଁ...ବୁଢ଼ା ବ'ସରେ ପୁଣି ପେରେମ ! ଛି କରଲୋ ! କି କବିତ୍ୱ ବାହାରୁଛି ପୁଣି ସେ ମୁହଁରୁ.....

ହଟ - ସତ, କହୁଛି ସୀତା, ଖାସ୍ ତୁମରି ଲାଗି... ଖାସ୍ ତୁମରି ଲାଗି, ମୋର ସବୁ ବିଫଳ ହୋଇଗଲା । ଖୁବ୍ ବଡ଼ ପଣ୍ଡିତ ହୋଇଥାନ୍ତି, ଖୁବ୍ ଜଣେ କବି ହେଇଥା'ନ୍ତି...କିନ୍ତୁ....

ସୀତା - କି...ହେଲ ନାହିଁ...ତୁମକୁ କିଏ ମନା କରୁଥିଲା କି ? ଲାଜ ନାହିଁ ସେ ମୁହଁକୁ । କହିଛି ଯା'ର ଦେଖି ନା ତା'ର ଦେଖି ଫରକି ହଉଛି (ମୋ) ଡାହାଣ ଆଖି !



ହଟ - ସେଇତ....କହୁଛି ପରା ଖାସ୍ ତୁମରି ଲାଗି, ଡାହାଣ ଆଖି ନ ଫର୍କି ମୋ ବାଁ ଆଖି ଫରକୁଛି । ତୁମରି ଜଞ୍ଜାଳ ତ ମୋତେ ସାରିଲା...ମୁଁ ଆଉ ପଣ୍ଡିତ ହେଉଛି କୋଉଠି ? ନା କବିତା ଲେଖୁଛି କୋଉଠି ?

ସୀତା - ହଉ, ଥାଉ ଥାଉ ସେ କଥା । ଗାଁରେ ଶୁଣିବେ । କୁଆଡ଼େ ଯିବା ହେଇଥିଲା ଶୁଣେ ଦିନ ଦିପହରୁ ?

ହଟ - ସେଇଆ ନକୁହନ୍ତ କି ତୁମେ । ପୁରୁଷ ଲୋକଟା, ମୋର ବାର ଆଡେ ବାରଶ କାମ । କୁଆଡେ ଗଲି, କୁଆଡୁ ଆସିଲି ତା' ପୁଣି ତୁମ ପାଖରେ କୈଫିୟତ୍ ଦେବାକୁ ପଡିବ ନା ?

ସୀତା - ଯଉଁ ଲୋକତ' ସେଥିରେ ପୁଣି କ'ଣ ନା ବାରଶ କାମ ! ଅଖା ଚପଟକରେ ତ କେହି ପଚାରୁ ନାହାନ୍ତି....ପୁଣି କ'ଣ ନା କାମ....କି କାମଟା ଥିଲା ଶୁଣେ ?

ହଟ - ଏଁ...ଏଁ କ'ଣ କହି ଯାଉଛ...କ'ଣ କହିଯାଉଛ....ଅଖା ଚପଟକରେ କେହି ପଚାରୁ ନାହାନ୍ତି ? ଓଃ, ହା କପାଳରେ ! ଏତେ ଧାଁ ଧପଡ଼ କରି ଘରଲୋକଟା ଯଦି ସୁଆଗିଆ କଥା ଦି'ପଦ ନ କହିଲା, ଆଉ ମୋତେ କହିବ କିଏ ? ମୁଁ ସତ କହୁଛି — ଏ ଲୋକଟାର ହାତଧରି ମୋର ସବୁ ଗଲା । ଏକ୍ଷିଣି କେତେ ଲୋକ ମୋ ଗୋଡ଼ ଧରୁଥା'ନ୍ତେ ! ସେ ରମା ଆଉ ବଇଁଶୀଆର କାନକୁ ମୋଡ଼ି ଛାଡ଼ି ଦିଅନ୍ତି ନାହିଁ ? କାଲିକା ଅଣ୍ଡା ଦିଖଣ୍ଡ । ଚିପି ଦେଲେ ରସ ବାହାରି ପଡ଼ିବ ...ହେଃ ସେ ପୁଣି ମୋତେ କଥା କହିବେ...ଆମ ଉପରେ ତୁମର କି ଅ-ଧି-କା-ର ଅଛି...ଆଚ୍ଛା, ହଉ...ହଉ କଉ ପାଣି କୁଆଡ଼େ ଯାଉଛି ଯାଉ । ତୁମେ ତ ଅଛ — ମୁଁ ତ ଅଛି ।

ଦେଖିବା ଭଲା ହଟ ସାଙ୍ଗରେ ତୁମେ କେତେ ଉଠୁଛ...ହଟ ମିଶ୍ରଟି ଇଏ, ତାକୁ ଯିଏ ଚିହ୍ନିଛି — ତା ଚଉଦ ପୁରୁଷକୁ ସେ ଚିହ୍ନିଛି ।

ସୀତା - ଅ—ହ, ଏଇ କାମଟା ତା'ହେଲେ ଥିଲା । ଏଇ କାମତ କରି କରି ବଂଶ ବୁଡ଼ିବାକୁ ବସିଲାଣି...ପୁଣି ସେଇଆ....

ହଟ - (ଟିକିଏ ରାଗିଯାଇ) ଯା'ଭିତରେ ତୁମେ ଠଉରେଇ ନେଲଣି ନା କାମଟା....ତୁମେ ଗଲ....ଗଲ ମୋ ଆଗରୁ । ମୋତେ ଏସବୁ ଭଲ ଲାଗୁ ନାହିଁ.....ସବୁବେଳେ ଖେରଖାଣ୍ଡିଆ କଥାଗୁଡ଼ାକ —

ସୀତା - ତୁମ ଆଗରୁ ଯିମି କାହିଁକି, ଏ ଘରୁ ତ ଏକେବାର୍ ଚାଲି ଯିମି ... ମୋର କିଏ ନାହିଁ କି ? ଲୁଡ଼ି ବସିନେ ପରା ହଜାରେ ବାହାରିବେ । ତୁମ କବି ହେବା ବନ୍ଦ କରିମି କାହିଁକି....(ଚାଲି ଯାଉଥିଲେ, ଚାବି କାଠିଟା କାନିରୁ ଫୋପାଡ଼ି ଦେଇ କହିଲେ ।) ହେଇ ନିଅ ତୁମ ଘର କରଣା ସମାନ ମୁଁ ଗଲି ବାହାରି । (ଚାଲିଗଲେ ।)

ହଟ - ଯାଅ...ଯାଅ ବାହାରି...ତୁମପରି ଲୋକର ମୁଁହ ଚାହିଁବା ଖରା' (ବସିପଡ଼ିଲେ ଛତାଟା ଫୋପାଡ଼ି ଦେଇ, ମିନିଟିଏ ପରେ ପୁଣି ଉଠି) ଆରେ ସତରେ ଲୋକଟା ଚାଲି ଗଲାନା କ'ଣ ? ସୀତା, ଏ ସୀତା....ଚାଲିଗଲନା କ'ଣ ସତରେ (ଚାଲି ଯାଉଥିଲେ ଗୋଟେ ପାଖକୁ । ପଶିଆସିଲେ ନଟବର । )

ନଟ - କାହାକୁ ଡାକୁଛ ହଟ ନନା, ଭାଉଜତ ହାଣ୍ଡିଶାଳରେ ଅଛନ୍ତି ନା କ'ଣ ? ହାଣ୍ଡି ଖଡ଼ ଖଡ଼ ହେଉଛି ।

ହଟ - ଆରେ, ଆରେ...କ'ଣ କହୁଛୁ....ହାଣ୍ଡିମାଇଲା ନା କ'ଣ ?

ନଟ - (ହସି) କିଏ ମ' ? ଭାଉଜ କ'ଣ ଖାଉନାହାନ୍ତି କି ? ହାଣ୍ଡି ମାରିବେ କାହିଁକି ବା ?



ହଟ - ତୁ କହନା ନଟ, ଲୋକଟା ମୋତେ ସାରିଦେଲା...ଆଚ୍ଛା ଜଞ୍ଜାଳରେ ମଣିଷ ପଡ଼ିଲା ଯେ.....

ନଟ - କ'ଣ କିଛି କାମ ଥିଲା ମୋ'ଠି ? ଡାକିଥିଲ-ଯେ...

ହଟ - ହଁ...ହଁ ବସ ବସ ଭାଇ ! କହିବାକୁ ଭୁଲି ଯାଇଛି । ଆଚ୍ଛା ସରଟାକୁ ତୁ ସବୁବେଳେ କାହିଁକି ଗୋସ୍ୱାମୀ ଘରକୁ ପଠାଉଛୁ କହିଲୁ ? ପିଲାଟା ସରିଗଲା ସେଠିକି ଯାଇ ।

ନଟ - ତା' ମାଇଁର ତ ଏକାଯିଦ୍ ସରକୁ ସେଇଠି ଛାଡ଼ିବା ପାଇଁ...ରମାର ସ୍ତ୍ରୀକୁ ତ ତୁମେ ଜାଣ । ଆସିଲାଣି ଚାରିବର୍ଷ ହେଲା । ମୁଁହ ଟିକିଏ କେହି ଦେଖି ନାହାନ୍ତି ? ତା'ପରେ କୁଳୀନ ଘର ଝିଅ, ଆଚାର ବ୍ୟବହାର ସବୁଥିରେ ପିଲାଟା ପାରଗ । ସର ମାଇଁର ଇଚ୍ଛା ଯେ ସର ସେଇଠିକି ଯାଇ ସାଷ୍ଟଣା ଶିଖୁ । ମୋର ବା ସେଥିରେ ଆପତ୍ତି କ'ଣ ? ବାପ ମା ଛେଉଣ୍ଡ । ଶାଶୁ ଘରେ ଯେମିତି ଗାଲି ନଖାଉ । ଏଇତ ମୋର ସବୁବେଳେ ଚିନ୍ତା ।

ହଟ - ସାଷ୍ଟଣା ଶିଖୁ ଶିଖୁ ଭାଣିଜି ଏଣେ ଯେ ଜୋଇଁ ଖୋଜିବାରେ ଲାଗି ଗଲେଣି....

ନଟ - (ଆହତ ହୋଇ) ହଟନନା !

ହଟ - ମୁଁ କ'ଣ କହିବି......ଜଗତ ତ ସେଇଆ କହୁଛି । ସମସ୍ତେ ଜାଣିବା ପୂର୍ବରୁ ମୁଁ ତୋତେ ସାବଧାନ କରିଦେଲି ନଟ ! ନହେଲେ, ସେତେବେଳେ ଡିବି ଡିବି ବାଜୁଥିବ ଯେ....କାନରେ ହାତ ଦେବାକୁ ତର ସହିବ ନାହିଁ ।

ନଟ - କାହିଁ ମୁଁ ତ ଏକଥା ସ୍ୱପ୍ନରେ ସୁଦ୍ଧା ଜାଣି ନାହିଁ । ବରଂ ସରର ବ୍ୟବହାର ଦିନକୁ ଦିନ ଆହୁରି ସୁନ୍ଦର ହେଉଯାଉଛି ।

ହଟ - କହିଛି ପରା — ମହାକାଳ ଫଳ ଉପରେ ସୁନ୍ଦର ଭିତରେ କଳା ଅଙ୍ଗାର...ତୁ ଜାଣିବୁ କେଉଁଠି ନଟ....ଆଜିକାଲି କାର ଚୋକିଙ୍କ ଗୁଣ । କହିଛି ପରା ଛେଉଣ୍ଡଙ୍କର ଅନୁକୋଟି ମାୟା, ଛେଉଣ୍ଡକୁ ନ କରିବୁ ଦୟା....ବୁଝିଲୁ ଏବେତ ଜାଣି ପାରିଲୁ ସବୁକଥା । ଭାଣିଜିକୁ ଆକଟ କର୍ । ନହେଲେ ପଛରେ ବୁଝିବୁ । ମୋ ଦୋଷ ଦବୁ ନାହିଁ କହି ଦଉଛି ।

ନଟ - ମୋତେ ତ କାହିଁକି କିମିତିକା ଲାଗୁଛି ।

ହଟ - ଆରେ କିମିତିକା ଲାଗୁଛି କ'ଣ ? ମୋତେ ଅବିଶ୍ୱାସ ହେଉଛି ତ ଲାଲା ଘର ପୁଅ ଗିରିଧାରୀକୁ ପଚାର ସେ କହିବ । ସେଦିନ ପରା ମୁଁ ନିଜେ ଦେଖିଛି ସବୁ ଘଟଣା...କହିବି କ'ଣ ? ତୁତ ସାନ, ମୁଁ ତ ବଡ଼ । ସେ ଦିନ ବଡ଼ି ଭୋରୁ ମୁଁ ଝାଡ଼ା ଯାଉଛି । ତୁମ ସର ଚାଙ୍ଗୁଡ଼ାଟିଏ ଧରିଛନ୍ତି । ଲାଲାଘର ପୁଅ ଗିରିଧାରୀ ତା' ପାଖକୁ ଲାଗି ଠିଆ ହେଇଛି । ସକାଳୁ ସେ ଆସୁଛି ବଇଁଶୀ ଘରକୁ । ବାଟରେ ତାକୁ ଅଟକେଇଲା ସର । ତାଙ୍କ ଭିତରେ କ'ଣ କିଜାଣି ଆଗରୁ କଥାବାର୍ତ୍ତା ହେଉଛି ମୋତେ ଶୁଭିନାହିଁ । ହଠାତ୍ ଗିରିଧାରୀ କ'ଣ କଲାନା... (ଏଆଡ଼କୁ ସେଆଡ଼କୁ ଅନାଇ ନଟ କାନପାଖରେ ଚୁପ୍ କରି କ'ଣ କହିଦେଲା ।)

ନଟ - (ଚମକିପଡ଼ି) ହଟନନା !

ହଟ - ମୁଁ ଜାଣେ ପରା, ତୁ କଉ ବାପର ପୁଅ । ପାପକୁ ପ୍ରଶ୍ରୟ ଦେଲା ପୁଅତୁ ନୁହେଁ । ସେଇଥି ପାଇଁ ତତେ ଡାକିକି କହି ଦେଲି । ନହେଲେ ମୁଁ ଯଦି ସେ ରକମ ହେଇଥା'ନ୍ତି — ତା'ହେଲେ ଏ ଗାଁରେ ତୁ ଆଉ ମୁଣ୍ଡ ଟେକି ଚାଲିପାରନ୍ତୁ ନାହିଁ । ହଉ ଯା ଭାଇ



ଯା...ଏବେ ଟିକିଏ ସାବଧାନରେ ରହ । ସରକୁ ଏକଥା ପଚାରିବୁ ନାହିଁ । ଆମ କଥା ଆମେ ଜାଣି ହୁସିଆର୍ ହେଇଗଲେ କଥା ସରିଲା ।

ନଟ - ହେଲେ ହଟନନା ! ......

ହଟ - ବିଶ୍ୱାସ କରିପାରୁ ନାହୁଁ; ନୁହେଁ ?

ନଟ - ସର ପରି ପିଲା.....

ହଟ - ଅଃ, କହିଲା ପରା ଛୋଟ ଗୋଖରର ବିଷ ବେଶି — ଯା ଏବେ....ଆଉ ବେଶି କହିବି ନାହିଁ....କଥାର ଗୁମର ଫିଟି ଯିବ ।

ନଟ - (ଉଠି) ମୁଁ ଏକଥା ପ୍ରତ୍ୟକ୍ଷ ଭାବରେ ନଜାଣିଲେ କିଛି କରି ପାରୁନାହିଁ ଏକା । (ଚାଲିଗଲେ ।)

ହଟ - ହୁଁ...ପ୍ରତ୍ୟକ୍ଷ ଭାବରେ ଦେଖିବା ପୂର୍ବରୁ କାମ ସରି ଯାଇଥିବ ବାପ ଧନ ! (ତାଙ୍କ ଯିବା ବାଟ ଆଡକୁ ଚାହିଁ ।) (ସୀତାର ପ୍ରବେଶ)

ସୀତା - ହୁଁ, ଏଇ ବେପାର ସବୁ ଚାଲିଛି ନା ? ଆଉ କ'ଣ ଅଛି କି ? ବୁଢ଼ା ହେଇ ପାଚିବାକୁତ ବସିଲଣି ଝିଅପୁଅ ଦେଖିଲ ନାହିଁ । ପେଣ୍ ପରଝିଅ ବହୁକୁ ଉଡ଼ାଉଛ । ନାଜ ନାହିଁ ସେ ରସିକ ପଣିଆକୁ । କହିଛି — ତୁଚ୍ଛାକୁ ଏତେ ନା ମୁଦି ନାଇ ଗୋଡ଼ କଚାଡୁ କେତେ ? ଭଲ ଦଶା ଅଛି ତ ସେ ବେଉସା ଛାଡ଼ — ନହେଲେ ଭଲ କଥା ହବ ନାହିଁ କହି ଦଉଛି ଏକା...ହଁ....

ହଟ - ଗଲାତ' ଭାସିଯିବେ........ତୁମେ ପରା ବାପଘରକୁ ପଳଉଥିଲ ? ପୁଣି ଏଠି ଗୋଳମାଳ ଆରମ୍ଭ କଲ କାହିଁକି ? ମଣିଷକୁ କ'ଣ ଟିକିଏ ଶାନ୍ତିରେ ରଖେଇ ଦେବ ନାହିଁ ...

ସୀତା - ଶାନ୍ତି ? (ତାଚ୍ଛଲ୍ୟରେ) ଏଜନ୍ମରେ ଶାନ୍ତି ପାଇବ ନା ତୁମେ ? ଅଲାଜୁକକୁ ନାଜ ସରମ ବି କୁଆଡ଼େ ଗଲାନା...(ଦୁମ୍ ଦୁମ୍ ହେଇ ଚାଲିଗଲେ ।)

ହଟ - ତୁ ଯଦି ଆଜି ମରିଯା'ନ୍ତୁ, ତା'ହେଲେ ତ କାମ ନ ଯାଉଣୁରୁ ଫେର୍ ଗୁଟେ ବାହା ହୁଅନ୍ତି...ଡେର୍ ଚଣ୍ଡୀଡିର୍ଲା । (ସୀତା ଯିବା ବାଟକୁ ଚାହିଁ ।)

- ପରଦା -

(୪)

(ଗ୍ରାମପଥ — ସମୟ ସକାଳ — ଆଚାର୍ଯ୍ୟ ଶୁକଦେବ ଓ ହଟନାଗର ଯାଉଥିଲେ ଗାଧୋଇବା ପାଇଁ )

ହଟ - ମୁଁ ଜାଣେ ପରା, ଏ ରକମ କାଣ୍ଡ ଗୋଟାଏ ନିଶ୍ଚୟ ହେବ । ଦେଖିଲେ ନା ଅବଧାନେ ! ମୋ କଥା ସତକି ମିଛ ?

ଆଚାର୍ଯ୍ୟ - ମୋତେ କିନ୍ତୁ କଥାଟା ବିପରୀତ ବୋଧ ହେଉଛି ହଟନାଗର ।

ହଟ - ନାଇଁ ଅବଧାନେ, କଥାଟା ଏକବାର୍ ସାଧାସିଧା । ଦେଖୁ ନାହାନ୍ତି— ଗିରିଧାରୀ ପରି ପିଲା, ତା ସାଙ୍ଗରେ ପୁଣି କିମିତି ଗୋଳମାଳ ଆରମ୍ଭ କରିଦେଲା ଟୋକାଟା । ଲାଲାଘର ପୁଅଟି, ଲାଲେଲାଲ କରିଦେଲାବାଲା ସେ । ତାକୁ କ'ଣ ଇମିତି ସିମିତି ଠଉରେଇଛି ବେଟା ? ମୁଁ ସେଦିନରୁ ପରା ଆପଣଙ୍କୁ କହୁଛି — ଏ ହେଲା ମୋଗଲ ତାମସା — ପଠାଣଙ୍କ ଭାଷା, ପଠାଣଙ୍କ କାମ ସେ କାହିଁକି ହିନ୍ଦୁଗ୍ରାମର ପବିତ୍ର ଚତୁଷ୍ପାଠୀରେ ହେବ ? ଯେଉଁଠି ନିତି ଗୀତାଭାଗବତ ପଢ଼ାଯାଏ । ସେଠି ପୁଣି ପଠାଣଙ୍କ ଯାତ୍ରା...ଓଃ କି ପାପାଚାର !



ଶୁକ - ବୁଝିଲ ହଟନାଗର, ରମାବଲ୍ଲଭକୁ ମୁଁ ଛୁଆଟି ବେଳୁ ଦେଖି ଆସୁଛି । ତା ବାପାଙ୍କ ସହିତ ବି ମୋର ପରିଚୟ ଥିଲା । ତାଙ୍କ ବଂଶରେ ସମସ୍ତେ ନିଷ୍କଳଙ୍କ । କେବଳ ବଂଶୀଟି ଥିଲା ଗୋଟାଏ କଳଙ୍କ । ତେବେ ଯା'ହେଉ ବାବାଙ୍କ ଦୟାରୁ ସେ ମଧ୍ୟ ଉତ୍ତମ ପଥ ଧରିଛି । ପାରସୀଭାଷାରେ ତା'ର ଯେଉଁ ଅଗାଧ ପାଣ୍ଡିତ୍ୟ ତା' ଦେଖି ମୁଁ ବଡ଼ ବିସ୍ମିତ ହେଇଯାଉଛି । ତୁମେ ବୁଝୁଛ କିନ୍ତୁ ଭୁଲ୍ । ସେ ଯେଉଁ ତାମସା ସବୁଲେଖିଛି — ତା'ର ମୂଳ କଥା ହେଉଛି ଯେ ସେ ଏକ ପ୍ରକାର ପାରସୀ ଗୀତିନାଟ୍ୟ । ଏଯୁଗରେ ବଂଶୀର ପାରସୀଭାଷାରେ ନାଟକ ଲେଖିବା ହେଉଛି ସର୍ବପ୍ରଥମ । ଏକା ଓଡ଼ିଶା କାହିଁକି, ସାରା ଭାରତ ମଧ୍ୟ ଏକଥାକୁ ସ୍ୱୀକାର କରିବ । ମୁଁ ଭାବୁଛି ଯେତେ ଦିନ ପର୍ଯ୍ୟନ୍ତ ମୋଗଲ ସାମ୍ରାଜ୍ୟ ଏବଂ ପାରସୀ ଭାଷାର ପ୍ରତିଷ୍ଠାନ ଏ ଦେଶରେ ଥିବ ସେ ପର୍ଯ୍ୟନ୍ତ ବଂଶୀବଲ୍ଲଭକୁ କେହି ଭୁଲି ପାରିବେ ନାହିଁ । ତା'ପରେ ଆଉ ଗୋଟିଏ କଥା ହେଉଛି ଯେ ଏ ନାଟକ ମୋଗଲ ସାମ୍ରାଜ୍ୟର ଦୋଷତ୍ରୁଟି ଦେଖାଇବାର ଏକ ମାଧ୍ୟମ । ତେଣୁ ଏହାର ଯଦି ଚତୁଷ୍ପାଠୀରେ ବୈଠକି ବସୁଛି ତେବେ ସେଥିରେ ତ କିଛି କ୍ଷତି ନାହିଁ । ମୁଁ ଭାବୁଛି ବରଂ ଏହା ଦ୍ୱାରା ଉପକାର ହେଉଛି । ଆଜିକାଲିର ମୋଗଲ ତହସିଲ୍‌ଦାରମାନେ ଯାକୁ ଦେଖି କିମ୍ବା ପଢ଼ି ହୁଏତ ନିଜର ଭୁଲ ବୁଝିପାରି ଏ ଦେଶକୁ ଅତ୍ୟାଚାରରୁ ରକ୍ଷା କରି ପାରନ୍ତି ।

ହଟ - (କ'ଣ ଉତ୍ତର ଦେବ କିଛି ଭାବି ନପାରି) ହଁ ତା'ବି ହେଇପାରେ ଆପଣ ଯେତେବେଳେ କହୁଛନ୍ତି, ତାକୁ କାଟି ଦେବାର କ୍ଷମତା ତ ମୋର ନାହିଁ । ତେବେ ପିଲାଗୁଡ଼ାକ ! ଏହିପରି ଆପଣା ଆପଣା ମଧ୍ୟରେ ମନାନ୍ତର ହେବାଟା କ'ଣ ଭଲ ହେଲା ।

ଶୁକ - ଗିରିଧାରୀକୁ ଅବଶ୍ୟ ମୁଁ ଭଲଭାବରେ ଜାଣି ନାହିଁ । ତଥାପି ପିଲାଟା ଆତ୍ମଗର୍ବୀ ପ୍ରକୃତିର । ସେ ଯେ ଜଣେ ଶିକ୍ଷିତ ପିଲା ତା ମୁଁ ମାନୁଛି । କିନ୍ତୁ କାଲି ଯେତେବେଳେ ସେ ଦି'ଜଣ ଦୁହିଁଙ୍କର ପୋଥି ନେଇ ମୋ ପାଖକୁ ଆସିଲେ ମୁଁ ଦୁଇଟି ଯାକ ପୋଥିକୁ ଭଲଭାବରେ ପଢ଼ିଦେଖିଲି । ବଂଶୀର ଲେଖାରେ ଅଛି ମୌଳିକତା ଏବଂ ଗିରିଧାରୀର ଲେଖା ତା'ଲେଖାର ଛାୟାମାତ୍ର । ମୁଁ ସ୍ପଷ୍ଟ ଲକ୍ଷ୍ୟ କରିଛି ମୋର ମତାମତ ଦେବା ପରେ ମଧ୍ୟ ପିଲାଟା କିପରି ବେଖାତିର ଭାବରେ ଚାଲିଗଲା । ଜଣେ ବନ୍ଧୁ ସହିତ ଘନିଷ୍ଠ ଭାବରେ ମିଳାମିଶା କରି ତା' ସହିତ ଏପରି ବିଶ୍ୱାସ ଘାତକତା କରିବା ଘୋର ଅନ୍ୟାୟ ହେଇଛି ।

ହଟ - ହଁ ତା' ନୁହେଁ କ'ଣ ଆଉ ?

ଶୁକ - ତଥାପି ମୁଁ ତାକୁ ବୁଝାଇଲି । ବଂଧୁବଂଧୁ ମଧ୍ୟରେ ଏପରି ଗୋଳ କରିବା ଭଲ ନୁହେଁ । କିନ୍ତୁ ସେ ଟୋକା କୌଣସିଥିରେ ସମ୍ମତ ହେଲାନାହିଁ ।

ହଟ - ଯିଏ ଯେମିତି କରିବ ସେମିତି ଭୋଗିବ । ଆମର ଯାଏ କେତେ ଆସେ କେତେ ? ଚାଲନ୍ତୁ ଯିବା । ବେଳ ହଲାଣି....(ଦୁହେଁ ଚାଲିଗଲେ ।)

- ପରଦା -

## (୫)

ହଟ ନାଗରଙ୍କ ମନ୍ଦିର — ସମୟ ଦ୍ୱିପହର — ଗିରିଧାରୀ ଏବଂ ବଂଶୀ ବଲ୍ଲଭ କଥାବାର୍ତ୍ତା କରୁଥିଲେ ।)

ବଂଶୀ - ଗିରିଧାରୀ, ଏଇଟା କ'ଣ ସତରେ ଭଲ ହେଲା ?



ଗିରି - ମୁଁ ତ ମିଛ କହୁନାହିଁ ବଂଶୀ !

ବଂଶୀ - ମିଛ କହୁ ନାହୁଁ ଯେ — ମୋ ସାଙ୍ଗରେ ମିଶି ଏପରି ବିଶ୍ୱାସ ଘାତକତା କରିବାଟା କ'ଣ ଭଲ ହେଲା ?

ଗିରି - କି ଆଶ୍ଚର୍ଯ୍ୟ କଥା କହୁଛୁ ତୁ ? ତୋ ସଙ୍ଗେ ମୁଁ ବିଶ୍ୱାସଘାତକତା କଲି କେମିତି ମ ? ତୁ ତ ଲେଖିଛୁ, ମୁଁ ତ ଲେଖିଛି । ମୁଁ କହୁଛି ତୋ'ର କେତେ ଯାଗାରେ ଭୁଲ ଅଛି — ତୁ କହୁଛୁ ମୋର କେତେ ଯାଗାରେ ଭୁଲ ରହିଛି । ସେଥିରେ ଆଉ ବିଶ୍ୱାସଘାତକତା ରହିଲା କେଉଁଠି ?

ବଂଶୀ - ସତ କହିଲୁ ଗିରି ପୋଥି ଲେଖିଲା କିଏ ଆଗ, ତୁ ନା ମୁଁ ?

ଗିରି - ମୁଁ ଆଗରୁ ଭାବିଥିଲି କିନ୍ତୁ ଲେଖିବା ଯିମିତି ତୁ ଆରମ୍ଭ କରିଲୁ ମୁଁ ସେମିତି ଆରମ୍ଭ କରିଦେଲି ।

ବଂଶୀ - ମୁଁ ତ କେତେ ଯାଗାରେ ଦେଖିଛି ମୋ ପୋଥିର ଅବିକଳ ନକଲ ହେଇଛି ତୋ ପୋଥିରେ ।

ଗିରି - କହିବୁ ନି କାହିଁକି ? (ରାଗିଯାଇ) ତୁ ଭାବୁଛୁ ଉତ୍ତରେଶ୍ୱରଙ୍କ ପାଖରେ ଧାରଣା ପଡ଼ିଲୁ ବୋଲି ତୋ ସମାନ କବି ଆଉ କେହି ନାହାନ୍ତି ! ତୁ ଯାହା ଲେଖିବୁ ଆଉ କେହି ସେକଥା ଲେଖି ପାରିବେ ନାହିଁ । ନାଇଁ —

ବଂଶୀ - ଏମିତି ରାଗିଯାଉଚୁ କାହିଁକି ମଁ, ଗିରିଧାରୀ — ସାଙ୍ଗ ସାଙ୍ଗ ଭିତରେ କଳିଗୋଳ କରିବାଟା କ'ଣ ଭଲ ହେବ ? ଭାବି ଦେଖିଲୁ ?

ଗିରି - ମୁଁ କ'ଣ ଭାବି ନାହିଁ ? ହେଲେ ଦୋଷ ତ ମୋର ନୁହେଁ ।

ବଂଶୀ - ଆଉ କ'ଣ ମୋର ?

ଗିରି - ତୋ ର ହୋଇପାରେ । କିନ୍ତୁ ଏ କଥା ଜାଣ ରଖ ଯେ ମୁଁ ଭଲଭାବରେ ଜାଣେ ଯଦି ଏଥିରୁ କିଛି ଖନ୍ଦଳ ବାହାରେ, ତେବେ ଦୋଷଟା ମୋର ହେବ ନାହିଁ । ସେଇଥି ପାଇଁ ମୁଁ କହୁଛି ସାଲିଶ୍ ହେଇଯିବା ଭଲ ।

ବଂଶୀ - ମୁଁ ତ ମନା କରୁ ନାହିଁ । ତୋ ସଙ୍ଗେ ମୋର ପିଲାଦିନରୁ ସାଙ୍ଗ । ମୁଁ କ'ଣ ତୁଟେଇ ଦବାକୁ ମନା କରୁଛି ? ତୁ ତ ଜାଣୁ —ଭାଉଜ କିମିତି ତୋ ସଙ୍ଗେ ମିଶିବାକୁ ମନା କଲେ । ବଡ଼ଭାଉଜ ମା' ସମାନ । ତାଙ୍କ କଥା କାଟି ମୁଁ ଆସି ତୋ ସହିତ ସାଥି ହେଲି । ହେଲେ ସେ ସାଲିଶ୍‌ଟା କେମିତି ହବ କହିଲୁ ।

ଗିରି - ମାନିବୁତ କହିବି ।

ବଂଶୀ - ମ, ମାନିବି ନାହିଁ ?

ଗିରି - ମୁଁ କହୁଛି କି ସବୁ ତାମସାରେ ତୋ ନା ମୋ ନା ସାଥୀରେ ଯୋଡ଼ିବା ଯେ — କାହାରି କଳହ ରହିବ ନାହିଁ ।

ବଂଶୀ - ନା — ନା — ତା' ହୋଇ ପାରିବ ନାହିଁ । ଏତେ ଦୁଃଖରେ ବର ପାଇ ମୁଁ ଲେଖିଛି ତାମସା, ତେଉଁ କି ତୋ ନାଁ ସେଥିରେ ପୁଣି ବସେଇବି ? ତୁ ଏ କଥା କହିପାରୁଛୁ ?

ଗିରି - ନହେଲେ ତୋର ମୋର ଏଇଠୁ କଟାକଟି । ବୁଝିଲୁ ?

ବଂଶୀ - ଏଇଟା ଯଦି ତୋ'ର ଶେଷ ସିଦ୍ଧାନ୍ତ, ତେବେ ମୁଁ ନିରୁପାୟ ଗିରିଧାରୀ !

ଗିରି - ଉତ୍ତମ....(ଉଠି ଚାଲିଗଲା । ବଂଶୀ ଚାହିଁ ରହିଲେ ।

- ପରଦା -



( ୬ )

(ସଙ୍ଗତ ଗାଁ ମୁଣ୍ଡ ତୋଟା — ଖରାଦିନ ଦି'ପହର । ସର ବସିଥିଲା ବରଗଛ ମୂଳରେ— ଅଧାଲୁଚା ହେଇଥିଲା ଦେହଟା — ସେ ଗୀତ ଗାଉଥିଲା ।)

ରତି ସୁଖ ସାରେ ଗତମଭିସାରେ

ମଦନ ମନୋହର ବେଶମ୍

ମାକୁରୁ ନିତମ୍ବିନୀ ଗମନ ବିଳମ୍ବନମ୍

ଅନୁସର ତଂ ହୃଦୟେଶମ୍ ।

ଧୀର ସମୀରେ ଯମୁନା ତୀରେ ବସତି ବନେ ବନମାଳୀ ।

ପୀନପୟୋଧର ପରିସରମର୍ଦ୍ଦନ ଚଞ୍ଚଳ କରଯୁଗଶାଳୀ ।।

ନାମ ସମେତଂ କୃତସମେତଂ ବାଦୟତେ ମୃଦୁ ବେଣୁମ୍ ।

ବହୁ ମନୁତେ ତନୁତେ ତନୁସଙ୍ଗତ ପବନଚଳିତମପି ରେଣୁମ୍ ।।

ଧୀର ସମୀରେ....(ଗୀତ ମଝିରେ ପ୍ରବେଶ କରିଛି ଗିରି)

ଗିରିଧାରୀ - ଆହା — ହା — ମହୁତ ! ମହୁ ଆଉ କଉଁଠି ଥାଏ ? ଏ ବେଳକୁ ଆହା — ହା — କୋଇଲି ଖଣ୍ଡିଏ ତ ! (ଆଉଟିକିଏ ଗଛମୂଳକୁ ଚାଲିଯାଇ) ଗଛମୂଳେ କିଏ ସେ, ସରଟି ?

ସର - (ଉଠି ଚାହିଁଲା — ପୁଣି ଆଗପରି ବସିରହିଲା ଗୀତ ବନ୍ଦ କରି ।)

ଗିରି - ଆହା — ହା — କି ସୁଖ ଭାଙ୍ଗି ଦେଲୁରେ ଦଇବ, ଚଣ୍ଡାଳ ମୁଁ କାହିଁକି ଡାକି ଦେଲିଟି — ମହୁ ବରଷୁ ଥିଲା... ହାଏ—ହାଏ— ମୋ ଭାଗ୍ୟରେ ନାହିଁ । ସର—ସର ଲୋ....

ସର - (ବିରକ୍ତ ହୋଇ) କିଏ ମ ? ସୁଆଗ ଡାକ ! (ବସି ରହିଥାଏ ।)

ଗିରି - ହଁ ଲୋ ସର, ଚିହ୍ନିବୁ କାହିଁକି ? ଆଗେସିନା ଯାଉଥିଲି ଦେଖୁଥିଲି...ଚାରିଆଖିର ମିଳନ ହେଉଥିଲା...ଗିରଭାଇ ଡାକଟେ ପାଉଥିଲି । ଏକ୍ଷଣିଚ ଦୂଆର ବନ୍ଦ । ଶୁଣିବି ବା କାହିଁକି ? ଆଉ ତୁ ଚିହ୍ନିବୁ ବା କେମିତି ? ତୋ ଲାଗି ସିନା ମୁଁ ଛାଟିପିଟି ହୋଇ ପଳେଇ ଆସୁଛି — ଖାସ୍ ଥରଟାଏ ଦେଖିବା ପାଇଁ ।

ସର - (ଘୃଣାରେ) ସତେ !

ଗିରି - ମୋ ରାଣଲୋ — ଦି'ପହରଟାରେ ମୁଁ ପରା ସାରା ସଙ୍ଗତ ଗାଁଟା ଯାକ ତତେ ଠାବ କଲିଣି ! ଦଇବ ଯୋଗକୁ ହଟଦାଦା କହିଲା ଯେ ତୁ.....

ସର - ହଁ କହିଥିବ ତ ମୁଁ ତୁମକୁ ଏଇଠି ଅନେଇଁ ବସିଛି ବୋଲି !

ଗିରି - ହଁ ଲୋ, ତା'ରି ତୁଣ୍ଡରୁ ପରା ଶୁଣି ଦଉଡ଼ିଛି ।

ସର - କାହିଁକି ମ' ଏତେ ସୁଆଗ ମୋ ଉପରେ ?

ଗିରି - କହିବି କ'ଣ ସର, ମୁଁ ଜାଣେ କି ମୋ ମନ ଜାଣେ ସେ କଥା । ଦେଖିଲୁଣି କି ସୁନ୍ଦର ଅମୃତଭଣ୍ଡା ଯୋଡ଼ିଏ ଆଣିଛି ତୋ ପାଇଁ । ଯାକୁ ସୁଖ ପାଉ ବୋଲି ଲୁଚେଇ ରଖିଥିଲି । କେହି ଦେଖି ନାହାନ୍ତି ।

ସର - ସେଇତକ ଧରି କାକାଙ୍କୁ ଲୁଚେଇ ଏ ଖରାବେଳଟାରେ ଦୌଡ଼ିଛ ନୁହେଁ ? କି ସରାଗ ସତେ....ଲାଜ ନାହିଁ ତୁମକୁ । ମୁଁ ପରା ଥରେ କହିଥିଲି, ଶିକ୍ଷିତ ହୋଇ ଏ ଅଲାଜୁକ କଥା ଗୁଡ଼ାକ କେମିତି ମୁହଁରେ ଆଣୁଛ ମ' ?



ଗିରି - ତୋ ଗାଳିରେ ପୁଣି କି ମହୁଲୋ ସର ! ଆହା ହା (ଟିକିଏ ଆଗେଇ ଗଲେ ଭଣ୍ଡାଧରି । ସର ଉଠି ପଡ଼ିଲା ।)

ସର - ଗିରଦାଦା, ଥରେ କହିଲି ପରା — ଏତେ ଯେବେ ସରାଗ ଉଛୁଳି ପଡୁଛି ତେବେ ହାତକୁ ଦି'ହାତ ହେଇ ଘରେ ମହୁ ଚାଖୁ ନାହଁ ।

ଗିରି - ମନ କଥାଟାକୁ ଉଗାରି ପକେଇଲୁ ଏକା ସର ! ଅଗ ଜିଭ ଯାଏ କଥାଟି ଆସି ବାହୁଡ଼ି ଯାଉଥିଲା । ସେଇ କଥା କହିବି କହିବି ହୁଏଁ; କେତେଥର ସଞ୍ଜବେଳେ ମନ୍ଦିର ଠିକି ଯାଏଁ । ହେଲେ ସର । ଦୂରୁ ଚାହିଁ କରି ଖାଲି ନିଶ୍ୱାସଟେ ପକେଇ ବାହୁଡ଼ି ଆସେ ଯେତେବେଳେ ଦେଖେଁ.....

ସର - କ'ଣ ଦେଖ କହିଲ...ଲୁଚାଉଛ କାହିଁକି ?

ଗିରି - ଫାଳ ଅମୃତଭଣ୍ଡା — ଏଇ ହଟନାଗରଙ୍କ ବାଲ୍ୟଭୋଗ(ବଢ଼େଇ ଦଉଥାଏ ବଇଁଶୀ)..ଆଉ...ଆଉ ।

ସର - (ରାଗିଯାଇ) ଖାଉ...ଖାଉ...କ'ଣ କହୁନ...ଇମିତି ଚୋରଙ୍କ ପରି ଲୁଚାଉଛ କ'ଣ ମ ?

ଗିରି - ଆଉ ତୁ ଚାହିଁ ରହିଥାଉ ତା' ମୁହଁକୁ...

ସର - କ'ଣ କହିଲ ? ମୁଁ ତାକୁ ଚାହିଁ ରହିଥାଏଁ !

ଗିରି - ମୁଁ କ'ଣ ମିଛ କହୁଛି...ଗିରିଧାରୀର ପାରା ଆଖିଟି । ତୁନିହ ଆଲୋ (ଧୀରେ) ମୁଁ କଉଁ ଅଭଲ କହିଲୁ ? ଟିକିଏ ମନକୁ ବିଚାରିଲୁ । ବଇଁଶୀକୁ ଆଉ ମତେ ତଉଲିଲୁ ଦେଖି — ସେ'ଟୋକାକୁ ମୁଁ ଟୋକା । ସେ ସୁନ୍ଦରିଆ — ମୁଁ ଏବେ କଉଁ ଊଣା ? ଆଉ ବାକି ପାଠଶାଠ । ସେଟାତ ଗଜ ମୂରୁଖ ଟାଏ — ପିଲାଦିନେ ଯଉଁ

ବଦମାଶୀ କରୁଥିଲା ତୁ ବା ଦେଖିବୁ କୁଆଡୁ — ତ' ମାମୁଁକୁ ପଚାରିବୁ କହିବ — ଏବେ ସିନା ଅକର୍ମା ଦାନୀ ମହାଦେବଙ୍କ ପାଖରେ ଧାରଣା ଦେଇ କବି ଫିଟିଛି — ଭୁଲ୍‌ଭାଲ୍ କରି ଫାରସୀ ପଦ ବାନ୍ଧୁଛି — ହେଲେ ମୁଁ କୋଉ ଉଣାକି ? ପାଠରେ ପରା ମୁଁ ତା କାନ ମୋଡ଼ି ଛାଡ଼ିଦେବି ! ଜାଣିଛୁଟି ଏ ଲାଲା ପୁଅକୁ । ଖୋଦ୍ ଆଚାର୍ଯ୍ୟଙ୍କୁ ବି ଧମକେଇ ଦେଲାବାଲା । ସେ ତାମସା ଲେଖୁଛି — ମୁଁ ପରା ତା' ଆଗରୁ ତାମସା ଲେଖି ସାରିଛି ! ସେ କ'ଣ ମୋ ପାଖରେ କବି ଦେଖେଇବ ମ' ? ସେଇଥି ପାଇଁ ପରା ଦୁହେଁ ଦି'ଭାଗ ହେଇଗଲୁଁ — ଦେଖିବୁ ର' ଖାଲି । ଆଉ ଦୁଇ ମାସ ଯାଉ — ଏ ସାରା ରାଢିଆ ଓ ରଗଡ଼ା ପ୍ରଗଣାରେ କେମିତି ମୋ ନା ପଡ଼ିବ — ପୁଣି ଏକା ବଙ୍ଗାଳୀ ବ୍ରାହ୍ମଣତ ଆମେ । କହିଲୁ ଭଲା କୋଉଥିକୁ ତୋ'ର ଅମଙ୍ଗ ? (ଦୂରରେ ବଂଶୀର ପାଟି ଶୁଭିଲା । )

ସର - (ରାଗରେ) ତୁମ ପାଟିଟାକୁ ସେଇଁବା ପାଇଁ...ଖଚଡ଼ —

ଗିରି - ହେଇଟି ଅନେଇଲୁ ମିଛଟାରେ ଫଁ—ଫଁ କାହିଁକି ହଉଛୁମ' ମୁଁ ପରା ମୁଣ୍ଡରେ ବସେଇବିଲୋ ଦିଅଁଙ୍କ ତୁଳସୀ ପରି ।

ସର - ସତେ ? କାହିଁ ? ଦେଖିତୁମ ମୁଣ୍ଡ । ଅଭଦ୍ର ମୁଣ୍ଡରେ ଦେବି ଯେ ଗୋଇଠେ ସୁଆଗ ଛାଡ଼ିଯିବ ।

(ବଂଶୀଙ୍କ କଣ୍ଠସ୍ୱର ନିକଟରେ ଶୁଣାଗଲା ।)

ଗିରି - (ବଂଶୀଙ୍କ ଆସିବା ବାଟକୁ ଚାହିଁ) ହଉ, ହଉ, ଜଣାଗଲା ଯେ ତୋ ସତୀପଣିଆଁ । ସୁମଭାଉଜ ପାଖରେ ଯିମିତି ନ ପଟିଛି ବୁଲିବା ବାହାନା କରି ଦି'ପହରିଆବେଳେ ନିରୋଳା ଦେଖି ଏଇଠି ଆସି ବସିଛୁ — ନାଇଁ ? କଣ ତେବେ ଏଇ ବରଗଛ ମୂଳକୁ ? ଆଲୋ



ବର ଦଉଛୁ ନା ବର ପାଉଚୁଲୋ ! ହଉ, ହଉଲୋ, ତୋ ରସ ଛଡ଼େଇ ଦଉଚି ଲୋ ସର, ଥୟ ଧ —

ସର - ହଁ ମ କେତେ ଦେଖିଛି ! ତୁମପରି ପଣେ ମାଛିଆ ରସିକଙ୍କୁ ପରା ବଘାରି ଦେଇ ଛାଡ଼ିଛି !

ଗିରି - ହଉ ଦେଖାଯିବ ! ଆରେ ! ଠାର ଠୁର ଉଣିଶବିଶ୍ (ଯାଉ ଯାଉ) ହଉ ହଉଲୋ ଟୋକି ! (ଫେରିଆସି) ଅନା ରହିଲା ଏ ଗଣ୍ଠି ! (ଚାଲିଗଲା ।)

ସର - (ରାଗରେ ଥରୁଥିଲା) ଖାଲି ଗଣ୍ଠି କାହିଁକି ମ' ? ସେ ଭଣ୍ଡା ଦି'ଟାକୁ ବାନ୍ଧିଦେ....ଛତରା.... (କିଛି କ୍ଷଣ ପରେ ପୁଣି ଗୀତ ବୋଲିଲା, ପୁଣି ସେହି ଗଛମୂଳେ ବସି ।)

(ପ୍ରବେଶ କଲେ ବଂଶୀବଲ୍ଲଭ, ସର ତାଙ୍କର ଆଗମନୀ ଲକ୍ଷ୍ୟ କରି ନାହିଁ । କିଛି ବେଳ ସେଠାରେ ଠିଆ ହେବା ପରେ ଟିକିଏ ହସିଲେ । ସରର ସେତେବେଳେ ଆଖି ଫେରିଲା ।)

ସର - (ଗୀତ ବନ୍ଦକରି ଜିଭ କାମୁଡ଼ି) କେତେବେଳୁ ଆସିଲଣି, ମୋର ନହସ ନାଇଁ ନନା !

ବଂଶୀ - (ହସି) ତୁ ତୋ କାମରେ ଲାଗିଛୁ । କାହିଁକି ନହସ ହବ ? ମୁଁ ଭୁଲ୍ କଲିଲୋ ସର ! ମନ ଖୁସିରେ ଅଜାଣତରେ ହସି ହୋଇଗଲା । ସତ କହୁଛି, ମୁଁ ଜାଣି କରି ହସି ନାହିଁଲୋ ସର ! ହସି ପକେଇ ଆଉ ଭାବିଲା ବେଳକୁ କ'ଣ ଥାଏ ? ନେଡ଼ିଗୁଡ଼ତ କହୁଣୀ କି ବୋହି ଗଲାଣି ।

ସର - କାହିଁକି ହସିତ ଦେଲ ଟିକିଏ....କ'ଣ ହେଇଗଲା ସେଇଠୁ ଯେ ? ମୋ ଗୀତ ଶୁଣିତ କାଉ ଶାଗୁଣା ହସିବେ ! ଆଉ...?

ବଂଶୀ - ନାଇଁ, ଆଉ ତୋ'ର କ'ଣ ହବ ? ମୁଁ ଶୁଣୁଥିଲି ତୋ ଗୀତ

ଗୋବିନ୍ଦ ପଦ । ଶୁଣିବାଟା ମୋର ବନ୍ଦ ହୋଇଗଲା । ଆହା — କୋଉଠୁ ଯାକୁ ସବୁ ଶିଖିଲୁ ଲୋ ? ତୋ ଗଳା ସାଙ୍ଗକୁ ସତେ ଏପଦ ସୁନା ଚମ୍ପାରେ ବାସ ଚହଟିଗଲା ପରି ଏକା, କିଏ ଶିଖାଇଲା ଲୋ ତୋତେ ?

ସର - ନାଇଁ ମ' ନନା ! (ଆତ୍ମ ଶ୍ଳାଘାରେ ବିମୋହିତ ହୋଇ) କଅଣ ବୋଲି କ'ଣ ଏଣୁ ତେଣୁ ପଦେ ମନେପଡ଼ିଗଲା ଗାଇଦେଲି, ସେଥିରେ ପୁଣି ଶିଖେଇବ କିଏ ?

ବଂଶୀ - ଲୁଚଉଛୁ କାହିଁକିଲୋ, ମୁଁ କ'ଣ ତୋ' ଗଳାକୁ ଘେନି ପଳେଇବି ? ମୁଁ ଏକା କାହିଁକି ସମସ୍ତେ ପରା କହୁଛନ୍ତି — ତୋ ସରି ଝିଅ ଏ ଇଲାକାରେ ନାହିଁ, ନଥିବେ ।

ସର - (ଲାଜରେ) ସେଇଥିରେ ତ ପୁଣି ବାରବଦନାମୀ....

ବଂଶୀ - ତୋ, ନାଁରେ ବଦନାମୀ କରିବ ? ସତେ ? ଏମିତି ଜୀବ କିଏ ଅଛି ମ ଏଗାଁରେ ?

ସର - କାହିଁକି, ହଟଦାଦା ତ ମାମୁଁଙ୍କୁ କହିଥିଲେ ଯେ ମାମୁଁ ଯାଇ ମୋତେ ପଚାରୁଥିଲେ.....

ବଂଶୀ - (ଆଶ୍ଚର୍ଯ୍ୟରେ) କ'ଣ ପଚାରୁଥିଲେ ?

ସର - ମୁଁ କାଲେ ଟୋକାଙ୍କୁ ଡାକି ତାଙ୍କ ହାତ ଓଠ ଧରୁଛି ମୋତେ ବାହାହବା ପାଇଁ....

ବଂଶୀ - ସର ! ......

ସର - (କହିଯାଉଥାଏ ଉତ୍ତେଜନାରେ) କଥା କ'ଣ ଜଣାପଡ଼ିବ ନାହିଁ ? କେତେ କଥା କିଏ କହୁଛନ୍ତି । ଗିରଭାଇ ସେଇମିତି ଛତରାଙ୍କ ପରିବାର କଥା କହୁଛି । ମୁଁ ମୋ ତୁଣ୍ଡକୁ ଯାହା ଆସିଲା ଓଝାଳି ଦେଲି । ଚଦିଚି ପରା — ଗାଁ ଲୋକଙ୍କ ପାଖରେ ମୋ ନାଁରେ ଲଗେଇ କ'ଣସବୁ କହିବ, କହୁ । ପୋକ ମାଛି ହବ ନାହିଁ ? ମୁଁ ପୁଣି ଏଇ ଆଖିରେ ଦେଖିବି ।

ବଂଶୀ - ଛି ସର ! କ'ଣ କହୁଛୁତୁ ? କଳ୍ପବଟ ମୂଳରେ ସମ୍ଭୁତୁ ତାକୁ ? ସତକୁ ସତ ଫଳିଯିବ ଲୋ !

ସର - (ଉତ୍ତେଜନାରେ କାନ୍ଦି ପକେଇଲା ।) ହଁ, ସତେ ଯଦି ବଟ ଗୋସେଇଁ ହେଇଥିବେ ମୋ କଥା ଫଳିବ । ମୁଁ ଏଇ ଆଖିରେ ଦେଖିବି ।

ବଂଶୀ - ଛି—ଛି ବାୟାଣୀଟା ! ଏତିକି କଥାରେ କାନ୍ଦି ପକେଇଲୁ....ନାକ କାନ୍ଦୁଣୀଟା — ତୁନିହ' !

(ବଂଶୀବଲ୍ଲଭ ସରର ମୁହଁ ଧରି ଲୁହପୋଛି ଦେବା ସମୟରେ ପ୍ରବେଶ କଲେ — ରମାବଲ୍ଲଭ, ନଟବର ହଟନାଗର ଓ ଗିରିଧାରୀ —)

ହଟ - ପ୍ରତ୍ୟକ୍ଷ ଦୃଷ୍ଟିଗୋଚର ହେଲାତ ଏବେ ? ବାପଧନ, ଭାଣିଜିଙ୍କ ଗୁଣ ଦେଖିଲତ ନଟ ! ନଟବର ଦେଖିଲତ ? (ପାଟିଶୁଣି ବଂଶୀ ଘୁଞ୍ଚି ଆସି ପଛକୁ ଅନେଇ ଯାହା ଦେଖିଲେ, ସେଥିରେ ଦୁହେଁଯାକ ହତଭମ୍ବ ଭାବରେ ଠିଆ ହୋଇଗଲେ । ହଟନାଗର ଏବଂ ଗିରିଧାରୀ ଆଖି ଠରାଠରି ହେଉଥା'ନ୍ତି । ରମାବଲ୍ଲଭ ଓ ନଟବର ନିସ୍ପନ୍ଦ ଭାବରେ ଠିଆ ହୋଇଥା'ନ୍ତି । ବୁଝିଲ ରମା, ସେଦିନ ମୋତେ ବେଇଜତ୍ କରିଥିଲ କିନ୍ତୁ ହେଜି ଦେଖ ଆଜି ଏ ହଟ ମିଶ୍ରର କଥା — ମରଦକା ବାତ୍ ହାତୀକା ଦାନ୍ତ କ'ଣ ମୁହଁକୁ ବାନ୍ଧିଛନ୍ତି କବି ? ହେ — ହେ — ହୋ — ଏଗୁଡ଼ାକ ପୁଣି ମଣିଷ ହେଲେଣି — କବିତା ବାନ୍ଧୁଛନ୍ତି — ତାମସା ବାନ୍ଧୁଛନ୍ତି—

ପଛଆଡ଼େ ପୁଣି ନିଜତାମସା ଲୁଚେଇବାକୁ ଡର ସହୁନାହିଁ....ହଉ ହଉ ମୋତେ ଯା' ଟାଉଟର ଉପାଧିଟା ପୁରସ୍କାର ମିଳିଥିଲା, ସେଥିରୁ ମୁଁ ମୁକ୍ତି ପାଇଛି । ଆସ ବାପ ଗିରିଧାରୀ ! ଆମର ଏଠୁ ଚାଲିଯିବା ଉତ୍ତମ — (ଚାଲିଗଲେ ।)

ନଟ - ସର ! .....

ସର - ମା...ମୁଁ.... (ନଟର ଗୋଡ଼ତଳେ ପଡ଼ିଗଲା ।)

ରମା - ବଂଶୀ ! ...

ବଂଶୀ - ନନା ! ....(ରମାଙ୍କ ଗୋଡ଼ତଳେ ପଡ଼ିଗଲା ।)

- ପରଦା -

(୭)

(ହଟନାଗରଙ୍କର ଗୃହ । ହଟନାଗର ହୁକା ଟାଣୁଥିଲେ । ପାଖରେ ବସିଥିଲେ ଗିରିଧାରୀ— ସନ୍ଧ୍ୟା ଅବ୍ୟବହିତ ।)

ହଟ - ଆରେ ଅସଲି ପଦମ'....ଗଲା ପୁତ୍ର ନଆସେ ବାହୁଡ଼ି ଲୋ କୋଇଲି...। ହେଁ—ହେଁ କେମିତିକା କଥା...ହଟ ମିଶ୍ର ଟି...

ଗିରି - ହଁ ଦାଦା — ହେଲା ଯେ.....

ହଟ - ଦୁର୍ ତେରି...ଶକତ ମୁଙ୍ଗୁମୁଙ୍ଗିଆଟେ । ହେଲା ଯେ ତ — ପୁଣି ନହେଲା ଆଉ କ'ଣ ? କାନ୍ଥ ତ ଭୁଷୁଡ଼ି ପଡ଼ିଲା ଏକାବେଳେକେ ମୂଳଦୁଆରୁ ।

ଗିରି - ବଇଁଶି ସିନା ଗଲା....

ହଟ - ଗଲା ! କିରେ କ'ଣ ତା ମନକୁ ଗଲା ? ଅସଲ ବେଳେ ଚେଁଙ୍କା ପାଇଚି ଟି ! ସେ ଦାଗ ଆଉ ନିଭିବାର ନୁହେଁ । ବାକି କାମ ସବୁ



ତୁଲେଇବାକୁ ତୋ ପାଳି । ଏଣିକି ସବୁ କଉଡ଼ି ଖେଳର କାମ, ବୁଝିଲୁ ?

ଗିରି - ନାଇଁମ ହଟ'ଦା — ଟୋକିଟା କାଉଁରି କାଠି — ଭାଙ୍ଗିଯିବ ପଛେ ନଇଁ ନାହିଁ...ପୁଣି ସେ ଜଗାଟା କୁଟିଲାଣି ପରା !

ହଟ - ସତେ ?

ଗିରି - ଆଉ ?

ହଟ - ହଉ ହଉ । ମାମୁଁ ଗଲେ ଏକ୍ଷିଣି ଭଣଜାକୁ ଧରିଛି । ଆଚ୍ଛା, ହଉ, ମୁଁ ଗୋଟେ ବୁଦ୍ଧି ପାଞ୍ଚିଛି...,..

ଗିରି - କ'ଣ କହିଲ କହିଲ....(ଉଦ୍‌ଗ୍ରୀବ ହୋଇ)

ହଟ - ବଂଶୀ ଗଲାକୁ ଜଗା ଏଇନେ ଓସ୍ତାଦ୍ ବନିଛି । ଏ ଟୋକିଟା ତ ଆଉ ଘରୁ ବାହାରୁ ନାହିଁ....

ଗିରି - ସେଇଆ ପରା ! ସେଇଟାକୁ ମୁଁ ଆଉ ନିରୋଳା ପାଉନାହିଁ ।

ହଟ - ଆରେ ଖେଳଉଚି, ଖେଳଉଚି ମ' । ଥୋପ ଚାରିପଟେ ଚକା ଭଉଁରୀ ଖେଳଉଛି । ତୁ ଅଥୟ ହ'ନା —ଦମ୍ଭ ଧ' — ତା'ବାଗ ଅଲଗା — ସବୁଠିକ୍ ହୋଇଯିବ ।

ଗିରି - ତୁମ କଥାକୁ ମୁଁ ସତମଣୁଛି ଦାଦା — ହେଲେ ସେଟାକୁ ତ ବାଗରେ ପାଉନାହିଁ । ନହେଲେ ବାପ ମାଡ ନାହାନ୍ତି — ସେ କାକା ଖୁଡ଼ୀଙ୍କୁ ଛାଡ଼ି ଏକାଥରକେ ପରା ରାହାଜାନୀ କରିଦିଅନ୍ତି । (ହଟର ହାତଧରି)....ତୁମ ପାଞ୍ଚଟା ଟିକିଏ ଦହିଲ ହଟଦା —

ହଟ - ସେ ସବୁ ଗୁପ୍ତ କଥା — ଏକା ପଦକେ ଜଗା ଆଉ ସର ଦିହେଁ ଯାକ ଯିବେ ।

ଗିରି - ଏଁ — ଏ କ'ଣ କହୁଛ ହଟଦା — ସରଗଲେ ମୋର ତ, ସବୁସରିଲା —

ହଟ - ନାଇଁରେ — ଶିକ୍ଷିତ ପିଲାଟା ହେଇ ଏମିତି ମାଇଚିଆଟେ ହେଲୁ କାହିଁକି ମ' ? ସର କ'ଣ ସତରେ ମରିଯାଉଛି ?

ଗିରି - ନାଇଁ ଦାଦା — କୁ କାଳେ କୁ ଭବିଷ୍ୟତି । କାଳ ବେଳ ଉଡ଼ିଯାଉଛି । ତୁମେ ସେ କଥା ବୁଝନାହିଁ ।

(ଏ ସମୟରେ ବିରଞ୍ଚି ଆସି ପହଞ୍ଚିଲା ।)

ବିର - ନମସ୍କାର ହଟ ନନା ! (ଭୂମିଷ୍ଠ ପ୍ରଣାମ ।)

ହଟ - କିରେ ବିର ! ଏମିତି ଅବେଳଟାରେ କୁଆଡ଼େ ?

ବିର - ବଡ଼ ଗୁପ୍ତ କଥା ହଟ ନନା...ଯିମିତି ଶୁଣୁଛି ସିମିତି ଯାଉଛି ।

ହଟ - କ'ଣ ରେ !

ବିର - ଏଇ (ଧୀରେ ଧୀରେ) ଗୋସ୍ୱାମୀ ଘର ସାନପୁଅ ନୁହେଁ ? ଏଇମ ଯିଏ ତାମସା ବାନ୍ଧୁଛି.....

ହଟ - ହିଁ କ'ଣ ହେଲା ସେଟୁ ?

ବିର - ବାପା ଯାଇଥିଲେ ଗୋହିରାଟିକିରି — ଏଇମ ଧାମନଗର ନୁହେଁ ଯଉଁଠି ମୁକୁନ୍ଦଦେବ ରାଜା ମରିଥିଲେ ବୋଲି କହନ୍ତି —

ହଟ - କ'ଣ ହେଲାତ କହିଯିବୁ ।

ବିର - ବାପା ଯାଇଥିଲେ ଗୋଟେ ବାହାଘର କରିବାକୁ ଯେଜମାନରେ ବାଟରେ ଆସିଲା ବେଳକୁ ଦେଖିଲେ ଯେ ସେ ଟୋକାଟା ପୋଥି ଶକତ ବିଡ଼େ କାଖରେ ଯାକି ସିଧାଚାଲିଛି....

ଗିରି - ଏଁ....

ହଟ - ସେଇଠୁ....?

ବିର - ବାପା ତାକୁ ପଚାରିଲେ କୁଆଡ଼େ ଯାଉଛି ବୋଲି ।

ଗିରି - ସେ କ'ଣ କହିଲା ?

ବିର - କହିଲା ତ ଦିଲ୍ଲୀ ଯିବ ବୋଲି....

ଗିରି - ଏଁ ଦିଲ୍ଲୀ ଯିବ ?...ହଟଦା ପଟି ମାରିଦେଲା ଟୋକା — ନନା ପାଖକୁ ଯିବ କହି ବେଶ୍ ଚିତା କାଟିଲା । ଏଥର ସମ୍ଭାଳ — ବାଦଶା'ଙ୍କ ଠାରୁ ପାଗ ନ ଆଣି କ'ଣ ଛାଡ଼ୁଛି ?....

ହଟ - ହଉ ହଉ ବିର, ତୁ ଯା ନାନୀପାଖକୁ । କାଲି ସକାଳୁ ଚାଲିଯିବୁ । ଆଜି ଆଉ ନ ଯା — (ବିର ଚାଲିଗଲା ।)

ଗିରି - ଏଥର ହାରିଗଲି ହଟଦା —

ହଟ - କେମିତି ଚଙ୍ଗଚଙ୍ଗିଆଟେ ମ' ତୁ ? ହାରିଲୁ ପୁଣି କ'ଣ ?

ଗିରି - ଯଉଁ ତାମସା ପୋଥି ନେଇ ତା'ର ମୋର କଜିଆ — ସେଇ ପୋଥି ଦେଖେଇ ସେତ ପାଗ-ପିତାମ୍ବରୀ ଆଣିବ । ମୋର ଆଉ କ'ଣ ଲାଭ ହେଲା ?

ହଟ - ଆରେ ସେଇଥିକୁ ଗୋଟାଏ ଚିନ୍ତା — ମୁଁ ଏଣେ ସବୁ ଠିକ୍ ଠାକ୍ କରୁଛି । ତୁ ଆଜି ସଜ ହେଇ ଦିଲ୍ଲୀ ବାହାରିଯା । 'ରାଇ ବଣିଆ' ଧରିଲେ ହାତୀ ପାଇଯିବୁ ଯେ — ସେ ଯିବ ତା ନନା ପାଖକୁ — ସେଠୁ ପୁଣି ଯିବ ଦିଲ୍ଲୀ — ନଉଟାଣି ବାଟ — ବହୁତ ଡେରି ହେବ । ତୁ ଯଦି ଆଜି ସିଧା ବାହାରି ଯାଉ ତେବେ ସଅଳ ପହଞ୍ଚିଯିବୁ । ବୁଝିଲୁ ? ତେଣୁ ପାଗ-ପିତାମ୍ବରୀ ନେଇ ଫେରିଲା ବେଳକୁ ଅନାନି — ହେଇଟି ସର ମାଳ ଧରି ଚାହିଁ ରହିଥିବ । ଆସିଲା ମାତ୍ରେ କଉଡ଼ି ଖେଳରେ....

ଗିରି - ସତେ କ'ଣ ମୋ ଭାଗ୍ୟରେ ଅଛି ହଟଦା —

ହଟ - (ଠିଆ ହେଲେ ଦୁଇଜଣ) ଆରେ କହିଲି ତ — ହଟ ମିଶ୍ର ପରା ଏ....ପୂର୍ବ ସୂର୍ଯ୍ୟ ପଶ୍ଚିମରୁ ଉଇଁବ କିନ୍ତୁ ତା' କଥା ଅନ୍ୟଥା ନୋହିବ ହେଁ....ହେଁ......

ଗିରି - ତୁମ ଦୟା —

- ପରଦା -

## (୮)

(ରମାବଲ୍ଲଭଙ୍କର ଗୃହ — କବାଟ କିଳା ହେଇଛି । ସୂର୍ଯ୍ୟ ଉଦୟ ହେଇ ସାରିଲେଣି । ରମାବଲ୍ଲଭ ବାହାରୁ ମୁଁହ ପୋଛି ପୋଛି ଆସିଲେ ।)

ରମା - ଦିଅ, ଦିଅ, ମୋ ''ଝୋଲା''ଟା ଦେଲ — ସ୍ନାନଟା ସାରି ଦେଇ ଆସେଁ । (ଦ୍ୱାର ପାଖକୁ ସେହିପରି ଆସି ଦେଖିଲେ କବାଟ ଭିତରୁ କିଳା ଯାଇଛି ।) କବାଟ ତ କ'ଣ କିଳା ହେଇଛି ? ଉଠିବ ନାହିଁକି ? (କବାଟରେ ହାତ ମାରିଲେ । କବାଟ ଫିଟାଇ ଆସିଲେ ସୁମତି — ନିଦରୁ ଉଠିଛନ୍ତି ।)

ରମା - (ଅଳ୍ପ ହସି) ଖରା କେତେ ଉଠିଲାଣି ଦେଖିଲ ?

ସୁମ - (ଉଦାସ ଭାବେ ଚାହିଁ) ହଁ ।

ରମା - ଏତେ ବେଳଯାଏ ଆଜି ଶୋଇ ପଡ଼ିଥିଲ ! କ'ଣ ଦେହ କିଛି ହଉଛି ? (କାନ୍ଧରେ ହାତ ପକାଇ ଦେଲେ ।)

ସୁମ - (ହସି—ସାମାନ୍ୟ କଟାକ୍ଷ) ନାଇଁ, ଦିହ କିଛି ହେଇ ନାହିଁ ଯେ କାମ ଦାମତ କିଛି ନାହିଁ, ଏଡ଼େ ସଅଳ ଉଠି କ'ଣ କରନ୍ତି ?

ରମା - ଏତେ ବେଳଯାଏ ଶୁଅ ନାହିଁ ତ ତୁମେ !



ସୁମ - ଶୁଏ ନାଇଁ, କି ଶୋଇ ନଥିଲି । ଖାଲି ଚାହିଁ ଶୁଆ — ବଂଶୀ ଥା'ନ୍ତି ସିନା ପାହାନ୍ତାରୁ ଲେଖନୀ ପୋଥି ଦେବାକୁ ପଡ଼େ । ସେତ—

ରମା - ହଁ....ହଁ...ମୁଁ ତ ଗାଁରୁ ଶୁଣି ଆସିଲି ହଟ ନନାଙ୍କ ଶଶୁର ତାକୁ ଧାମ ନଗର ଜଗନ୍ନାଥ ସଡ଼କରେ ଦେଖି ଆସିଲେ ବୋଲି ।

ସୁମ - ସେ କ'ଣ ଆଉ ଆସିବେ ନାହିଁ ଘରକୁ ? ତୁମେ ଯାଅ ତାକୁ ଫେରେଇ ଆଣିବ । ମୋତେ ଜମାସୁଖ ଲାଗୁନାହିଁ ।

ରମା - ଆରେ ସେ କ'ଣ ରାଗିକରି ଯାଇଛି ଯେ ମୁଁ ତାକୁ ଫେରେଇ ଆଣିବି ? ରାଧା ପାଖକୁ ଯାଉଛି ବୋଲି କହି ଯାଇଛି । ଆସିବ ଦିନା କେତେ ଗଲେ । ଜଗାତ କହୁଥିଲା ଦିଲ୍ଲୀ ଯିବ କାଳେ !

ସୁମ - ଦିଲ୍ଲୀ କେଉଁଠି ମ' ? ବାଟ ହୁଡ଼ା ହେବେନିତି ଆଉ ?

ରମା - ତୁମର ଯଉ କଥା ! ବଂଶୀ କ'ଣ ଛୁଆ ହେଇଛି ? ସାରା ମଉଜାଟାରେ ପରା ତା ନାଁ ସମସ୍ତେ ଜାଣିଗଲେଣି । ଆମେ ମସ୍ତ ଲମ୍ୱା ଉପାଧିଟିମାନ ପାଇ ସୁଦ୍ଧା ଏତେ ଲୋକ ଆମକୁ ଜାଣି ନାହାନ୍ତି । ସେ ଯଦି ଚାରିଆଡ଼େ ବୁଲାଚଲା ନକରିବ ତେବେ ପ୍ରସିଦ୍ଧ ହେବ କେମିତି ? ମୁଣ୍ଡକୁ ହାତ ପାଇଗଲାଣି — ଆଉ ତା' ପାଇଁ ବ୍ୟସ୍ତ ହବାର କାରଣ କ'ଣ ? ତା' ଭଲ ମନ୍ଦକୁ ବାବା ହଟନାଗର ସାହା । ତା'ପରେ ପୁଣି ରାଧା ପାଖକୁ ଯାଇଛି । ରାଧା ଯେତେବେଳେ ଜଣେ ବଡ଼ କାଜି, ସେ ନିଶ୍ଚୟ ତା'ର ଦିଲ୍ଲୀ ଯିବା ପାଇଁ ସୁବିଧା କରିବ ।

ସୁମ - ସେ କଥାକୁ କିଏ ମନା କରୁଛି କି ? ବଂଶୀ ତ ବାବାଙ୍କର । ତା'

କ'ଣ ମୁଁ ଜାଣି ନାହିଁ ? ଏ ଗାଁର ବଡ଼ବୋଲାଙ୍କର ତ କଣ୍ଢା ସିଏ । ସେଇଥି ପାଇଁ ମନଟା ଟିକିଏ ଗୋଳେଇଘାଣ୍ଟି ହଉଚି । ନିଁତି ପାହାନ୍ତାରୁ ମୁଁ ନିଦରୁ ଉଠି ଚମକି ପଡୁଛି — ସତେ ଯେପରି ମୋତେ କିଏ କହୁଛି — ଭାଉଜ ! ମୋ ଲେଖନୀ ? ମୋ ପୋଥି ?? (କହୁ କହୁ ବାଷ୍ପରୁଦ୍ଧ ହେଇ କାନ୍ଦି ପକାଇଲେ । ରମା ଗାମୁଛାରେ ଲୁହ ପୋଛି ଦେଲେ ।)

ରମା - ଛି, ଯେ ସବୁ କ'ଣ ? ପାଠଶାଠ ପଢ଼ି ଏଇ ବୁଦ୍ଧି ଶିଖିଛ ନା ? ତମେ କାନ୍ଦିଲେ ତା'ର ଅନିଷ୍ଟ ହେବ ଯେ —

ସୁମ - (ରମାବଲ୍ଲଭଙ୍କ ଲୁହ ପୋଛିବାରେ ବାଧା ଦେଇ) ନାଇଁ — ନାଇଁ — ବଇଁଶୀ ମୋର ଭଲରେ ଥା'ନ୍ତୁ । (ଲୁହ ପୋଛୁ ପୋଛୁ ପଳେଇବା ସମୟରେ ଅନ୍ୟପଟୁ ପ୍ରବେଶ କଲେ ନଟବର, ଗାଧୋଇବା ପାଇଁ ଆସିଛନ୍ତି ।)

ନଟ - ରମା, ଅଛନା ହୋ....

ରମା - କିଏ ନଟ, ଆସ ଆସ । (ଆସନ ଦେଲେ ବସିବା ପାଇଁ)

ନଟ - ନାଇଁ ଥାଉ ଥାଉ ବସିବି କ'ଣ ? କ'ଣ ସ୍ନାନ ସରିଲାଣି କି ?

ରମା - ନାଇଁ ସରିଲା କୋଉଠି ? ଯିବାପାଇଁ ତ ବାହାରିଛି । ତୁମର ସରିଲାଣି ନା କ'ଣ — ନା ଯିବା ପାଇଁ ଆସିଛ ?

ନଟ - ମୋତେ ଆଉ ସ୍ନାନ କରିବାକୁ ତର କାହିଁ ନା ଖାଇବାକୁ ବି ତର କାହିଁ...ଆଚ୍ଛା ଫାନ୍ଦରେ ପଡ଼ିଲା ମଣିଷ ଆସି ।

ରମା - କିହୋ, କ'ଣ ହେଲା କି ?

ନଟ - ହବ କ'ଣ ମ' ଆଉ ? ତୁମ ଜଗାକୁ ତ ଜାଣିଚ — ସବୁଥିରେ ଗୋଟାଏ ଆଗଚଲାଟାଏ । ଆମର ଏମିତି ଅଛି ସେମିତି ଅଛି । ସବୁବେଳେ ଖାଲି ବଡ଼ିଆଣା ଦେଖେଇ ହଉଥିବ — ତହସିଲ୍‌ଦାର୍ ଆସିଛନ୍ତି ଯେ ଖଜଣା ଅସୁଲ ପାଇଁ — କାଲିତ ଆଖଡ଼ା ହଉଥିଲା ଚତୁଷ୍ପାଠୀ ଠେଇଁ — ସମସ୍ତଙ୍କୁ ଡାକି ଆଣିଲା ଦେଖେଇବା ପାଇଁ । ସବୁ ଦେଖିତ କାବ୍‌ବା । ଘଡ଼ିଏତ ବସି ଦେଖିଲେ । ତାଙ୍କ ସାଙ୍ଗରେ ଯେଉଁ ପଞ୍ଚାକ ଆସି ନାହାନ୍ତି, ସେଗୁଡ଼ାକ ତ ଆଁ କରି ପିଇଗଲେ ଖାଲି ।

ରମା - ସେ କ'ଣ ବୁଝି ପାରିଲେ ?

ନଟ - ହଁ ମ' ! କ'ଣ ସବୁତ ଠ,ଠା,ଠି କରି ବୁଝିଲେ । ଆମ ସାଙ୍ଗରେ ତ ଭଲ ଓଡ଼ିଆ କହୁନାହାନ୍ତି — ତେବେ ବୁଝି ପାରିଲୁ ଯେ ଭାରି ପ୍ରଶଂସା କରୁଛନ୍ତି । ବଂଶୀକୁ ଦେଖିବା ପାଇଁ ଚାହିଁଲେ । ଆମେ କହିଲୁ ସେ ନାହାନ୍ତି । ତା'ପରେ କିରସ ପାଇଲେ କିଜାଣି ଜଗାକୁ ନେଇ ରାତି ପହରକରେ ଆମ ଘରେ ହାଜର — କ'ଣ ନା ତାମସା ପୋଥିସାରେ ଦିଅ — ଆହୁରିତ 'ବ୍ରଜ ବୋଲି' ନା ଶୁଣି ନାହାନ୍ତି ନଇଲେ —

ରମା - ମଲା, ଏ କ'ଣ ଖଜଣା ହେଇଚି କି ପାଉତି କାଟିଲା ପରି କାଟି ନେବେ !

ନଟ - ନାଇଁ ହୋ ଯୋଗକୁ ମିଳିଗଲା ବାବାଙ୍କ ଦୟାରୁ ।

ରମା - କୋଉଠୁ ମ' ?

ନଟ - ସେଇ ଆଚାର୍ଯ୍ୟ ମ' । ବୁଢ଼ାକୁ 'କ'ଣ ତ'ର ଅଛି ଆଉ ? ଗଲା ଖାଲି ପୋଥି ଉତାରିବାରେ ଲାଗିଛି ସେ । ଦୂରଦୂରାନ୍ତରୁ ତାଙ୍କ

... ଏଇନେ ଆସି ଯାତରା ମେଳେଇଲେଣି !
ଅକ୍ଷରଗୁଡ଼ିକ କିସୁନ୍ଦର କରି ଲେଖୁଛି । ବୁଢ଼ା ତ ଚତୁଷ୍ପାଠୀ କାମ ଛାଡ଼ିବାକୁ ବସିଲାଣି । ସେଇ ସବୁ ଝିଂଝଟ ମେଣ୍ଟଉ ମେଣ୍ଟଉ ପରା ଏତେ ଡେରି । ହଉ ଚାଲ ଯିବା । ବେଳ ହେଲାଣି । ସୂର୍ଯ୍ୟ ଉଠିଗଲେଣି ତେର ଉପରକୁ —

ରମା - ହଁ ଚାଲ....

- ପରଦା -

## (୯)

### ଦିଲ୍ଲୀ ଦରବାର

(ବହୁମୂଲ୍ୟ ସିଂହାସନ — ପାର୍ଶ୍ୱରେ ପରିଚାରକଗଣ ଠିଆ ହୋଇଛନ୍ତି । ମଧ୍ୟରେ ନର୍ତ୍ତକୀ ଏକ ଲାସ୍ୟ ଭଙ୍ଗୀରେ ଠିଆ ହୋଇଛି । ଏହ ସମୟରେ ବହୁମୂଲ୍ୟ ଅଳଂକାର ପରିହିତ ସମ୍ରାଟ — ମଞ୍ଚକୁ ଆସି ବୀରଠାଣିରେ ସିଂହାସନାରୋହଣ କଲେ । ବନ୍ଦୀ ସ୍ତୁତି ଗାଇଲା —)

ବନ୍ଦୀ - ଦିଲ୍ଲୀଶ୍ୱରେବା ଜଗଦୀଶ୍ୱରେବା ମହାମହିମ ସମ୍ରାଟ୍‌ଙ୍କର....
(ଅନ୍ୟମାନେ—) ଜୟ ! (ତିନିଥର)
(ନର୍ତ୍ତକୀର ନୃତ୍ୟ ଆରମ୍ଭ ହେଲା । ତା'ପରେ ସେ ସଲାମ ଦେଇ ବିଦାୟ ନେଲା ।)

ମୁନିମ୍ - ଜହାଁପନା ! ଉଡିଶ୍ୟା ସେ ଏକଠୋ ଆଦ୍‌ମି ଆପ୍‌କା ଦର୍ଶନ ଚାହ୍‌ତା ହେ ।

ମୌଲବି - କୌନ୍ ?

ମୁନିମ୍ - ଏକଠୋ ମୌଲବୀ କା ସରିକା ମାଲୁମ୍ ପଡ଼୍‌ତା ହେ ।



ସମ୍ରାଟ୍ - ଓ୍ୱ ତୋ କଲ୍ ଆୟାଥା ।

ମୌଲବି - ନେହିଁ, ନେହିଁ — ଏକଠୋ ଠଗ୍ ହେ ଓ୍ୱହ.....

ସମ୍ରାଟ - ମୈ ତୋ ୟହି ଜାହିର୍ କିୟା ଥା କି ପହଲେ ମୌଲବୀନେ ଉସ୍‌କୋ ଦେଖନା ଚାହିୟେ । ଔର୍ ଉସକେ ବାଦ୍ ହମ ଉସ୍ କିତାବ୍‌କୋ ଇନ୍ତଜାର୍ କର୍‌ଲେଙ୍ଗେ....

ମୌଲବୀ - ମଗର୍ ଉନ୍‌ହୋନେ ତୋ ଇନ୍‌କାର କରଦିୟେ । ବେଠିକ୍ ପାର୍ସି ଭାଷାମେ ୟହ କିତାବ୍ ଲିଖ୍‌ଗୟୀ ହେ । ଫିର୍ ଭି....

ସମ୍ରାଟ୍ - ଫିର୍ ଭି ?

ମୌଲବୀ - ଉସ୍ କିତାବ୍ ମେ ମୋଗଲ ଶାସନକୀ । ଏକଠୋ ଗଲତ୍ ବର୍ଣ୍ଣନ୍ କିୟା ଗୟା ହେ । ଉସ୍‌କେ ଲିୟେ ହି ବେମଞ୍ଜୁର ହୁଇ ।

ସମ୍ରାଟ୍ - ଓ୍ୱ ତୋ ଉସ୍‌କା କିତାବ ପଢ଼ାଥା କାଲ୍ ଦରବାର୍ ମେ ।

ମୌଲବୀ - ପାପ ଲଗେଗା ଜହାଁପନା । ବେଠିକ୍ ଫାର୍ସି ଭାଷାକା ପଢ଼ାନା ମୋଗଲ ଦରବାର୍ କୀ ହାନି ହେ ହୁଜୁର୍ ।

ସମ୍ରାଟ୍ - ମଗର୍ ଉସ୍‌ମେ ତୋ କୋଇ ଭୁଲ୍ ନ ଥି । ସବ୍‌ସେ ବଢ଼ିଆ ଫାର୍ସି ଭାଷାମେ ଏ ଲିଖି ଗୟୀ ହେ । ଖୈର୍ ମୈ ଶୋଚତା ହୁଁ କି ଫାର୍ସି ଭାଷାମେ ତମାସା ଲିଖ୍‌ନା ଇସ୍‌କାଲମେ ଉସ୍‌କା ସର୍ବପ୍ରଥମ ପ୍ରଚଲନ୍, ହେ ଔର ଇସିଲିୟେ ଉସ୍‌କୋ ପଗଡ଼ିଦେକର ଉଡିଶ୍ୟାମେଁ ପହୁଁଚା ଦେନା ହେ । ମଗର ଆପ୍‌ତୋ —
(ଖଲିଫା ପ୍ରବେଶ କଲେ । ସମସ୍ତେ ଠିଆ ହେଲେ । ତା'ପରେ ସେ ଆଶୀର୍ବାଦ କଲେ — "ଜିତେ ରହୋ" ।

ସମ୍ରାଟ୍ - ବୈଠିୟେ ! (ବସିବାର ସ୍ଥାନ ନିର୍ଦ୍ଦେଶ କରି ଦେଲେ । ଖଲିଫା ବସି ସାରିବା ପରେ ସମସ୍ତେ ପୁଣି ବସିଲେ ।)

ଖଲିଫା – ଦରବାର କା ସଦର ଦରୱାଜା ମେ ଏକଠୋ ଓଡ଼ିଆ ପଣ୍ଡିତ୍ ଆପ୍‌କା ଦର୍ଶନ ଚାହ୍‌ତା ହୈ ।

ମୌଲବୀ - ମଗର ଆପ୍ ନହିଁ ଜାନ୍‌ତେ ହେଁ କି ୱ ଏକ୍‌ଠୋ ଠଗ୍ ହୈ ।

ଖଲିଫା- ଇସ୍‌ସେ ପହଲେ ଆପ୍‌କୋ କାରଣ୍ ଦେନେକୋ ପଡ଼େଗା କି ୱ ଏକ୍‌ଠୋ ଭଣ୍ଡ୍ ହୈ ।

ମୌଲବୀ - ୱହ ଅପନେକୋ ଇସ୍ ଯୁଗ୍‌ମେ ଫାର୍ସୀ କା ପହଲା ତମାସା ଲେଖକ କେ ରୂପମେ ପରିଚୟ ଦେତା ହୈ । ମଗର ଦରୱାର କା ମୌଲବୀ ସବ୍ ଯହ ଇନ୍‌କାର କର୍ ଦେତେହେଁ ।

ଖଲିଫା - ଯହ ମାଲୁମ୍ ହୋଗୟା କି ଆପ୍ ଇସ୍‌କେ ବାରେ ମେଁ ଔର୍ କୁଛ ନହିଁ ଜାନ୍‌ତେ ହେଁ । କ୍ୟୌଁ କି ଅବତକ୍ ମୌଲବୀ ଲୌଁଗ୍ ଉନ୍‌କେ ଇସ୍ ଯୁଗ୍‌କା ଫାର୍ସୀଭାଷା କା ଆଦି ତମାସା ଲେଖକ କେ ରୂପମେଁ ମାନେ ଗୟେ ହେଁ ଔର ଉସ୍‌କା ହର ତମାସା ଶୁଦ୍ଧ ଫାର୍ସୀ ଭାଷାମେଁ ଲିଖ୍‌ଗୟୀ ହୈ ।

ସମ୍ରାଟ୍ - (ଆନନ୍ଦରେ) ତବ୍‌ତୋ ଯହ ଠିକ୍ ବାତ୍ ହୈ । ଉସ୍ ପଣ୍ଡିତ୍‌ଜୀ କୋ ଦରୱାର୍ ମେ ହାଜିର୍ କରୋ ।

ମୁନିମ୍ - ହୁଜୁର୍ (ମୁନିମ୍ ଚାଲିଗଲା । କିଛିକ୍ଷଣ ପରେ ପ୍ରବେଶ କଲେ ବଂଶୀବଲ୍ଲଭ ପୋଥିବିଡ଼ା ଧରି ।)

ସମ୍ରାଟ୍ - (କବିଙ୍କୁ ଆସନ ଦେଖାଇ ଦେଇ) ବୈଠିୟେ...ବୈଠିୟେ....ଆପଣଙ୍କୁ ହାମେ ବହତ୍ ଦେର୍ ତକ୍ ଦର୍‌ୱାଜାମେ ରଖିଲା, ଇସିଲିୟେ ମାଫି ମାଁଗ୍‌ତା ହୁଁ ।

କବି - (ପୋଥି ରଖି ସମ୍ରାଟଙ୍କୁ ସଲାମ୍ କଲେ ।) ଜାହାଁପନାଙ୍କର ନୀତି ଅତି ଉଦାର ଏହା, ଯେ କେହି ଲୋକ ବୁଝି ପାରିବ ।

ସମ୍ରାଟ୍ - ଆପନଙ୍କର ତମାସାର କହାନୀ କହ ସୁନାଇୟେ ହମେଁ । ୱକ୍ତ ତୋ ଢେର୍ ନହିଁ....

ଖଲିଫା - ଠିକ୍ ହେ ଜହାଁପନା । ଇସ୍ କବି ହମଲୋଗୌଁ କୋ କେବଲ୍ ହି କହାନୀ କହ ଶୁନାଏଁଗେ ।

କବି - ମହାମହିମ ସମ୍ରାଟ୍‌ଙ୍କ ଦରବାରରେ ଜଣେ ଦୀନ-ଦରିଦ୍ର ଓଡ଼ିଆ କବି ଆଜି ତା' ଲେଖାର ବିଷୟ ବସ୍ତୁ କହିବାକୁ ଯାଉଛି ଏଇଟା ତା'ପକ୍ଷରେ ଆଉ ତା ଜାତି ପକ୍ଷରେ ଯେ କେତେ ମହତ୍ ତାହା କେବଳ ପଣ୍ଡିତମାନେ କାହିଁକି ପ୍ରତ୍ୟେକ ବ୍ୟକ୍ତି ହୃଦୟଙ୍ଗମ କରିପାରୁଥିବେ । (ପ୍ରଥମେ ସେ ପୋଥିକୁ ନମସ୍କାର କଲେ ଏବଂ ତା'ପରେ —) ମୁଁ ସର୍ବମୋଟ ସାତୋଟି ତମାସା ଲେଖିଛି । ସେଗୁଡ଼ିକ ହେଉଛି — ଫକୀର, ଭୀଲ, ଯୋଗୀ, ଚେଓଡ଼ା, ମୋଗଲ, ରାଧାକୃଷ୍ଣ ଏବଂ ଲୋନୀନ୍ ମଜାବାଇ ତମାସା । ଫକୀର ତାମସାରେ ଫକୀରମାନଙ୍କର ଜନ୍ମର ରହସ୍ୟ, ଭୀଲ ତାମସାରେ ବ୍ରାହ୍ମଣର ଜନ୍ମ ରହସ୍ୟ ଏବଂ ତାଙ୍କର କ୍ରିୟା-କର୍ମ ଇତ୍ୟାଦି ବିଷୟ, ଯୋଗୀ ତାମସାରେ ଯୋଗୀ — ଯେଉଁମାନେ କି ହିନ୍ଦୁଜାତିର ଏକ ପ୍ରକାର ଫକୀର ସେହିମାନଙ୍କର ଜନ୍ମ ରହସ୍ୟ କ୍ରିୟା-କର୍ମ ଇତ୍ୟାଦି ଏବଂ ଚେଓଡା ତାମସାରେ ଚଉଡ଼ାମାନଙ୍କର କ୍ରିୟା-କର୍ମ ଏକ ପ୍ରକାର ଆଦିରସ ସଂଳାପରେ ଅବତାରଣା କରିଛି ।

ଖଲିଫା - ରାଧାକୃଷନ୍ ଔର୍ ୱହ ମୋଗଲ କା ତମାସା ?

ବଂଶୀ - ରାଧାକୃଷ୍ଣ ହେଉଛନ୍ତି ହିନ୍ଦୁଜାତିର ପୂଜ୍ୟ ଦେବତା । ଏହି ତମାସାରେ ମୁଁ ରାଧାକୃଷ୍ଣଙ୍କର ଗୋପଲୀଳାର ଏକ ଚିତ୍ର ଗୀତିନାଟ୍ୟ ହିସାବରେ ଦେଇଛି । ତା'ପରେ ହେ ମହାମହିମ ଜହାଁପନା ! ଯାହାକୁ ମୋର

ଏକମାତ୍ର ସମ୍ବଳ କରି ଏବଂ ଯାହା ପାଇଁ ଏତେ ଆଶା ପୋଷଣ କରି ଆସିଛି ସେ ହେଉଛି ମୋର ମୋଗଲ ତାମାସା....ଏଥିରେ କୌଣସି ଏକ କଥାବସ୍ତୁ ନାହିଁ । କିମ୍ବା ଏ ଗୋଟିଏ ଗଳ୍ପ ନୁହେଁ । ମହାମହିମ ସମ୍ରାଟଙ୍କ ରାଜ୍ୟରେ କିପରି କର୍ମଚାରୀମାନେ ପାପ, ବ୍ୟଭିଚାର ଏବଂ ଲୁଣ୍ଠନ କ୍ରିୟାରେ ଦେଶର ପ୍ରତିରନ୍ଧ୍ରକୁ କଳୁଷିତ କରୁଛନ୍ତି ତା'ରି ଏକ ନିଖୁଣ ଚିତ୍ର ଏଥିରେ ଅଛି ଜହାଁପନା ! ମୁଁ ଏତେ କଷ୍ଟ ସହି ଓଡ଼ିଶାରୁ ଆସିଛି ଧନଲୋଭରେ ନୁହେଁ । କିନ୍ତୁ ଆଶା କରିଛି ଏ ପ୍ରକାର ଅତ୍ୟାଚାର ଯେପରି ଦେଶରୁ ଘୁଞ୍ଚିଯାଉ । ଦେଶବାସୀମାନେ ନିର୍ଭୟରେ ଭ୍ରମଣ କରନ୍ତୁ । ଦେଶରେ ଶାନ୍ତିଶୃଙ୍ଖଳା ପୁଣି ଫେରିଆସୁ । ମୋର ଧନ ଲୋଡ଼ା ନାହିଁ । ଜନଲୋଡ଼ା ନାହିଁ । କେବଳ ଏଇତକ ମୁଁ ଚାହେଁ ।

ସମ୍ରାଟ - ହାମ ରାଜ୍ୟରେ କ'ନ ଏପରି କାଣ୍ଡ ହେଉଛି ?

ବଂଶୀ - ମିଥ୍ୟା ନୁହେଁ ଜହାଁପନା — ନିରାଟ ସତ୍ୟ—ପ୍ରମାଣ ବି ଦେଇ ପାରେଁ ....

ସମ୍ରାଟ୍ - ଏତୋ ବଡ଼ି ଅବଶୋଷ ହେ...ଆଚ୍ଛା । ହାମେ ତୁମ୍‌କୋ ବାତ୍‌ଦିୟା— ତୁମ୍ ଲୋଗ ଘର ପହଁଚନେକେ ପହଲେ ହର ସୁବାମେ ଶାନ୍ତି ଜରୁରୁ ଆସିଥିବ...କୋଇ ହେ ।

ମୁନିମ୍ - ହୁଜୁର୍....

ସମ୍ରାଟ - ଭାଣ୍ଡାରୀସେ ଏକ୍ ସୋନେ ଜରୀୱାଲା ପଗଡ଼ି, ସୋନାକା କୁଣ୍ଡଲ୍‌କା ଏକ ଯୋଡ଼ା ଲେଆଓ ....

ମୁନିମ୍ - ଜୀ ହୁଜୁର୍ (ଚାଲିଗଲା ଏବଂ କିଛି କ୍ଷଣ ପରେ ପହଞ୍ଚିଲା ଗୋଟିଏ ସୁନ୍ଦର ପଗଡ଼ି ଏବଂ କୁଣ୍ଡଳ ଯୋଡ଼େ ଗୋଟିଏ ଥାଳୀରେ ରଖି ।)



ସମ୍ରାଟ୍ - ଆସ କବି ! ତୁମ୍‌କୋ ଆଜ୍ ହମ୍ ପଗଡ଼ି ଦଉଛି । ଯେ ବଡ଼ି ସମ୍ମାନ କି ହେ । ତୁମ୍ ଲୋଗ୍ ହମାରା ଗଲ୍‌ତି ଦେଖାକର୍ ବହତ୍ ଉପକାର କିୟା ହେ ଔର୍ ଉସକେ ବାଦ୍ ପାର୍ସୀ ଭାଷାମେ ତମାସା ଲିଖ୍‌ନା ଶୁରୁ କିୟା ହେ ଇସ୍‌ଲିୟେ ଆଜି ଦିଲ୍ଲୀଶ୍ୱରେ ୱା ଜଗଦୀଶ୍ୱରେ ୱା ତୁମକୋ କବି ଔର ସମାଜ ସଂସ୍କାରକ କେ ରୂପ ମେ ସମ୍ମାନ ଦେତେ ହେଁ । (ପଗଡ଼ି ଓ କୁଣ୍ଡଳ ପିନ୍ଧାଇ ଦେଲେ ।)

ସଭାଜନ - ଦିଲ୍ଲୀଶ୍ୱରେୱା ଜଗଦିଶ୍ୱରେୱା କୀ ଜୟ !........ (ତିନିଥର)
କବି ବଲ୍ଲଭ କୀ ଜୟ !.........(ତିନିଥର)
(କାହାଳୀ ବାଜି ଉଠିଲା —)

- ପରଦା -

## (୧୦)

### ଗ୍ରାମପଥ

(ସେବକ, ନଟବର ଏବଂ ଜଗବନ୍ଧୁ କଥାବାର୍ତ୍ତା ହେଇ ଯାଉଥିଲେ । ସମୟ— ସୂର୍ଯ୍ୟାସ୍ତ—)

ନଟ - (ଗମ୍ଭୀର ଭାବରେ) ହଁ....ଏଇ ବିଚାର ତେବେ କାଲି ପଡ଼ିଥିଲା । ନା ?

ସେବକ - ବେଳ ଦେଖ — ଭୋଗନେଇ ହଟଙ୍କ ଘରକୁ ଗଲାବେଳକୁ ଗିରିଧାରୀ ଆଉ ହଟ ଦୁହେଁ ବସିଛନ୍ତି । ଚୁପ୍-ଚାପ୍, ଫୁସ୍-ଫାସ୍ ଶୁଭୁଛି । କବାଟ ଦର ଆଉଜା ହେଉଛି । ଟିକିଏ କାନେଇ କି ଠିଆ ହେଲି ।

ଜଗା - ହଉ ମୁଁ ଓସ୍ତାଦି କଲି ବୋଲି ସିନା ଖରାପ ହେଲି ଆଉ ବିଚାରି ସରର କ'ଣ ହେଲା ?

ନଟ - ଆରେ ତୁ ତୁନିହ । ପିଲାଲୋକ ବୁଝିବୁ କ'ଣ ?

ସେବକ - ଏବେ ପୁଣି, କହୁଛି କ'ଣ ନା ବଂଶୀ ବଦନାମିକୁ ଡରି ପଳେଇଲା — କଥାଟା କ'ଣ ଜଣାପଡ଼ିଲା ନାହିଁ ? କେମିତି ବାଗରେ ସେଦିନ କାଣ୍ଡଟା କରିଦେଲେ ହୋ !

ନଟ - ହଁ, ନୁହେଁ କ'ଣ — ହୁଁଃ !

ଜଗା - କହିଲ ଭଲା ପୁଛାରିଏ, ମୁଁ କି ଦୋଷକଲି ହଟ ମିଶ୍ରର ? ସେ କାହିଁକି ମୋତେ ଗାଳିଦବ । ମାମୁଁ ପୋଥି ଲେଖୁଥିଲେ—ଆଉ ତାମସା ଚଳଉଥିଲେ । ହେଲାକୁ ସେ ନାହାନ୍ତି । ମୁଁ ତାଙ୍କ କାମଟା ଚଳାଇ ଦେଲି । କ୍ଷତିଟା କ'ଣ !

ସେବକ - ଏ କଥାଗୁଡ଼ାକରୁ ତୁମେ କ'ଣ ପାଇବ ? ତୁମ କାମରେ ତୁମେ ଯ' (ଜଗାକୁ ଚାହିଁ ।) (ଜଗାର ପ୍ରସ୍ଥାନ ।)

ନଟ - (ଟିକିଏ ଜଗା ଯିବା ବାଟକୁ ଚାହିଁ) ହଁ, କ'ଣ କଥାଟା କହିବତି !

ସେବକ - ଆରେ ମୂଳ କଥା ହଉଛି ଗିରିଧାରୀ — ସରକୁ ବାହା ହବ ବୋଲି ହମହମ ହଉଛି ।

ନଟ - କ'ଣ କହୁଚମ' ନନା ! ଏଇଟା କ'ଣ ହେଇ ପାରିବ ?

ସେବକ - ହଁ ସେଇ କଥା ପରା ! ସର ଯେମିତିକା ଛୁଆ—ସଂସାର କଥା କିଛି ଜାଣି ନାହିଁ — ତା ସାଙ୍ଗକୁ ପୁଣି ଗିରିଧାରୀ ମୋ ମନକୁ ତ ପାଉ ନାହିଁ ।...ତା'ପରେ ପୁଣି ଗୋସ୍ୱାମୀ ଘର ସଙ୍ଗେ ଅପଡ଼...

ନଟ - ଆଉ ତେବେ କାହିଁକି....

ସେବକ - ଓଃ ଜାଣିନା, ଗାଁ ବଡ଼ବୋଲାଙ୍କ କଥା ? ଯଦି ତାଙ୍କ ପାଲରେ ନପଡ଼ିଲେ — ତେବେ ଆଉ କଉଁଠିକି ଯିବେନାହିଁ କି ଆସିବେ ନାହିଁ । କା' ପାଖରେ ବସିବେ ନାହିଁକି ଉଠିବେ ନାହିଁ । ବଂଶୀ ନାଁରେ ପରା ସେଦିନ ମିଛସତ ଦେଖିଲ....?

ନଟ - ଓଃ...ରାମ, ରାମ, ପାପୀ — ପାପୀ । ନର୍କଗାମୀ ହେବେ ! ହେଲେ ଏଇନେ ପୁଣି କ'ଣ ବିଚାର ହଉଛି ?

ସେବକ - ସର ନାଁରେ କ'ଣ ଇମିତି ମିଛସତ କହି ତାକୁ ବାଗକୁ ଆଣିବେ...କିଓ ଭାଗବତ ଭଲୁକୋ ଯଥା....

ନଟ - ହଁ...ହଁ...ଠିକ୍ କହିଛ...ସେଇଆ ତା' ହେଲେ ପାଞ୍ଚ.... ହେଲେ ଭିତରେ ବାଳ ଉଠିଥିଲେ ଯାଇ...ବୁଝିଲ ନନା—

ସେବକ - (ଯାଉ ଯାଉ) ହେଃ, କ'ଣ ଏତେ ସହଜ ପଡ଼ିଛି କି ? (ଫେରିଆସି ଧୀରେ ଧୀରେ) ଶୁଣ — ଶୁଣ ମନକୁ ଆସିଲା ଯେ ତୁମ ମନକୁ ପାଇବ କି ନପାଇବ କିଜାଣି ?

ସେବକ - (ନଟଙ୍କ କାନରେ କିଛି କହିଲେ ।)

ନଟ - ଆହେ କହିବାକୁ ଅଛି ପୁଣି ଆଉ ? ଆମେ ତ ସେଇଆ ଭାବିଥିଲୁ....ଖାଲି ବଇଁଶୀ ଫେରିଆସୁ । ତାକୁଇ ଚାହିଁ ବସିଛୁ ଆମେ । ଭଗବାନ ହଟନାଗର ତାକୁ କେମିତି ସୁରୁଖୁରୁରେ ଫେରେଇ ଆଣନ୍ତୁ । (ପ୍ରସ୍ଥାନୋଦ୍ୟତ ସମୟରେ ଜଗବନ୍ଧୁର ବିବ୍ରତ ଭାବରେ ପ୍ରବେଶ । )

ଜଗା - ଶୁଣିଲଣି ନନା !

ନଟ - କ'ଣ ରେ ? ତୁ ଏମିତି ଶୁଖି ଯାଇଛୁ କାହିଁକି ?

ଜଗା - ଗିରିଧାରୀ ନୁହେଁ ?

ନଟ - ହଁ କ'ଣ ହେଲା ସେଠୁ ?

ଜଗା -	ଦିଲ୍ଲୀ ବାଦଶା'ଙ୍କ ପାଖକୁ ଯାଉଥିଲା ଯେ ରାଇବଣିଆ ପାଖରେ ରାହାଜାନୀ ହେଇ ଘରକୁ ଖଣିଆ ହେଇ ପଳେଇ ଆସିଥିଲା । ଘରେ କାଲେ ଆଜି ଚାଲିଗଲା ।

ସେବକ ଓ ନଟ - ହଇରେ ଏଇଟା କ'ଣ ସତ କଥା ? ତୁ କାହା ପାଖରୁ ଶୁଣିଲୁ ?

ଜଗା -	ମ' ଗାଁ ଯାକ ଏଇନେ ଗୋଟେ ହୁରି ପଡ଼ିଯାଇଛି ।

ସେବକ -	(ଦୀର୍ଘଶ୍ୱାସ ଛାଡ଼ି) ହଉ ହଉ କେମିତି ହଉଛି ସବୁ ଦେଖ । ସାଙ୍ଗ ପାଖରେ ଶିଖି ପୁଣି ତା'ରି ପାଖରୁ ଚିପିନେଇ କ'ଣ ନା ମୁଁ କବି । ତା' ଆଗରୁ ମୁଁ ଲେଖିଛି । ହେଁ—ହେଁ—ଧର୍ମ ଅଛିଟି....(ସମସ୍ତେ ଚାଲି ଗଲେ ।)

- ବିଷ୍କମ୍ଭକ -

## କଥାବସାନ

(ହଟନାଗରଙ୍କ ମନ୍ଦିର । ସଂଧ୍ୟାକାଳ । ସେବକ ଆରତି ବିଧି ବିଧାନ ସଂଗ୍ରହରେ ବ୍ୟସ୍ତ ଥାଇ କେବେ ଫୁଲ, କେବେ ପାଣି ଢ଼ାଳେ ରଖି ଦେଇ ପୁଣି କୁଆଡ଼େ ଚାଲିଯାଉଛି । ବାହାରୁ ଆସିଲେ ପ୍ରଥମେ ସର ଓ ପରେ ପରେ ସୁମତି । ସର ମୁଣ୍ଡରେ ଓଢ଼ଣୀ— ଶାନ୍ତ ସ୍ୱଭାବ ବିଶିଷ୍ଟ ହୋଇଯାଇଛି, ସେ ଆସୁ ଆସୁ ଅଟକି ଗଲା । ସୁମତି ଦେହରେ ହାତ ବାଜେକି ନବାଜେ —)

ସୁମତି -	କି, ଚାଲୁ ନାହଁ ସର ! ପଛେଇ ଯାଉଛ କାହିଁକି ମ' ? ତମେ ଝିଅଟା — ଏମିତି ଯଦି ହବ ମୁଁ ଅବା କରିବି କ'ଣ ?

ସର -	ତୁମେ ଆଗରେ ଚାଲ.....

ସୁମତି -	କାହିଁକି ମ ? ଦେଉଳ ଦୁଆରେ ତୁମ ଗୋଡ଼ ଏଇମିତି ଛନ୍ଦି ହୋଇଯାଉଛି ?



(ଅଦୂରରେ ଜଗମୋହନରେ କେତୋଟି ଭଦ୍ରଲୋକଙ୍କ ଗୀତ ଗାଇବା ସ୍ତୁତି ପଢୁଥାନ୍ତି —)

ସର -	କିଏ ସବୁ ବସିଛନ୍ତି ପରା !

ସୁମତି -	ଯିଏ ହୁଅନ୍ତୁ । ସେମାନେ ତ ଆସିଛନ୍ତି ଠାକୁରଙ୍କଠିକି । ଆମେ ଦର୍ଶନ କରି ବାହାରି ଯିବା ଚାଲୁନ ? ତାଙ୍କୁ ଦେଖା ନ ଦେଲେ ଗଲା । ଚାଲ.....

ସର -	(ଠାକୁରଙ୍କ ଆଗକୁ ଯାଇ ନମସ୍କାରାନ୍ତେ—) ନନା କୁଆଡ଼େ ଗଲକି ? ଟିକିଏ ପାଦୁକ ଦେଇ ଯ'ମ — !

ସେବକ -	ହଁ, ହଁ...(ଭିତରୁ) (ପ୍ରସାଦ ଓ ପାଣି ଆଣି) ଏଁ ? ତମେ ସବୁ ଦର୍ଶନକୁ ଆସିଛ ? (ସୁମତି ଲାଜ କଲେ ।) ବାବାଙ୍କ ଆଳତି ସଜିଲ୍ କରୁଥିଲି ପରା । (ଚାଲିଗଲା ପାଦୁକ ଦେଇ । ଭାଉଜ ହେରିକା ଜୁହାର ହେଇ ଚାଲିଗଲେ — ନଟବର ଆସିଲେ ହାତରେ ଫୁଲମାଳ ନଡ଼ିଆ ଇତ୍ୟାଦି ପୂଜୋପକରଣ ।)

ସେବକ -	(ପ୍ରବେଶ କରି) ବାଃ ଭାରି ବଢ଼ିଆ କାମ କରୁଛ ଏକା ! ମଧଘି ବାବୁମାନେ କେତେ ବେଳୁ ପରା ଆସିଲେଣି !

ନଟ -	(ଜିନିଷ ପତ୍ର ରଖି) ନିଅ ଯାକୁ ସବୁ ରଖ । ଆଉ କ'ଣ ଲୋଡ଼ା କହିଲେ ଆଣିବି । ଏକୁଟିଆ ଲୋକ କ'ଣ କରିବି କହିଲ ?

ସେବକ -	ମଲା, ତୁମେ ଜମା ଜାଣ କି ? ମୁଁ ପୁଣି ତୁମକୁ ବତେଇବି ? ଯାହା ଆସିଛି ଆସିଛି । ଏ ବେଳରେ ବଚନଟା ସାର ହେଇଯାଉ— ତ୍ରିସନ୍ଧ୍ୟା କାଳଟି ଇୟେ ! ବେଳତ ଗଡ଼ିଯିବ — ସିଏ କୁଆଡ଼େ ଗଲେ ?

ନଟ - କିଏ ଗୋସେଇଁ ପୁଅ ?

ସେବକ - ଆହେ ! ସମୁଧି କୁହ ସମୁଧି । ତୁମ ଭାଣିଜି ବାପମା ଛେଉଣ୍ଡକୁ ତାଙ୍କ ଭଣଜାତ ବାପ ମା ଛେଉଣ୍ଡ — ରାଜ ଜୋଟକ ତ ଇୟେ ! (ରମାବଲ୍ଲଭଙ୍କ ପ୍ରବେଶ । ଆରେ କଥା ପଡୁ ପଡୁତ ଆସି ପହଞ୍ଚିଗଲେଣି । ହଉ...ହଉ ବେଇଗି ବେଇଗି ସାର ।

ରମା - କ'ଣ କରିବି ? କେତେବେଳୁ ଆସିଲିଣି । ବାଟରେ ଶୁଣିଲି ଗୋଟେ ଖବର ଯେ ଡେରି ହେଇଗଲା ।

ସେବକ - କି ଖବର ? ଶୁଭ ନା ଅଶୁଭ ମ' ?

ରମା - ନାଇଁ ଅଶୁଭ ନୁହେଁ । ତେବେ ଆଖିରେ ନଦେଖିଲାଠୁଁ ଜାଣିବି କିପରି ? ବଂଶୀ କାଲେ ଦିଲ୍ଲୀର ବାଦଶାଙ୍କ ଠାରୁ ପାଗ-ପଡିନି ନେଇ ଆସୁଛି ।

ସମସ୍ତେ - ସତେ !

ସେବକ - ଡେରି ପଛେ ହଉ ଭଲ ଖବର ଟେ କହିଲ ଏକା । ହଉ କାମ ବଢ଼ାଅ — ଆଜି ତ ଗୋଟିଏ ଅସିଲି ଶୁଭ ଦିନ — ଲଗ୍ନ ମାରା କର ନାହିଁ ।

ରମା - ହଉ ମନ୍ତ୍ର ପଢ ନନା ! ସେ ମଧସ୍ଥ ବାବୁମାନେ କାହାନ୍ତି ? (ସବୁ ଆସିବାରୁ ନମସ୍କାର ଆଦାନ ପ୍ରଦାନ ହେଲା ।) ହଉ ବାବାଙ୍କ ପାଖରେ ଭୋଗ ଲଗାଇ ପ୍ରସାଦ ଆଣ ନନା — (ସେବକ ନଡ଼ିଆ ପ୍ରଭୃତି ନେଇ ଭୋଗ ଲଗେଇ ଆଣିଲେ । ରମା ଓ ନଟବର ସେ ପ୍ରସାଦରୁ ସାମାନ୍ୟ ହାତରେ ନେଲେ ।)

ଜଣେ ଭଦ୍ରବ୍ୟକ୍ତି - କନ୍ୟା କର୍ତ୍ତା ପରା ଆଗେ କହନ୍ତି !

ସେବକ - ହଉ ହେଲା ।

ନଟ - ମୁଁ ମୋର ଭାଗିନେୟୀ ଶ୍ରୀମତି ସରସୀକୁ ତୁମ୍ଭର ଭାଗିନେୟ ଶ୍ରୀମାନ୍ ଜଗବନ୍ଧୁ ସହିତ ବିବାହ ଦେବାକୁ ଅଙ୍ଗୀକାର କଲି । ଏହା ମୋର ତ୍ରିବାର ସତ୍ୟ । ବୀବା ହଟ ।, ଅଷ୍ଟଦିଗପାଳ ଏବଂ ଉପସ୍ଥିତ ଭଦ୍ରବ୍ୟକ୍ତିମାନେ ଏଥିକୁ ସାକ୍ଷ୍ୟ ର ଲ । (ରମା ଲ୍ଲଭ ମଧ ତାଙ୍କରି ପରି କହିଲେ ।)

ରମା - ମୋର ଭାଗିନେୟ ଶ୍ରୀମାନ୍ ଜଗବନ୍ଧୁକୁ ତୁମ୍ଭର ଭାଗିନେୟୀ ଶ୍ରୀମତି ସରସୀ ସହିତ ବିବାହ ଦେବାକୁ ସ୍ୱୀକାର କଲି । ଏହା ମୋର ତ୍ରିବାର ସତ୍ୟ ।

ଭଦ୍ରବ୍ୟକ୍ତି - ଫୁଲ ଚନ୍ଦନ ଦେଇ ସମ୍ବନ୍ଧୀଙ୍କୁ ବରଣ କର ରମାବଲ୍ଲଭ । (ରମାର ତଥାକରଣ) ନଟବର ତୁମେ ମଧ ।

ନଟବର - (ଆନନ୍ଦରେ) ହଁ । (ଫୁଲମାଳ ଓ ଚନ୍ଦନ ଦେଇ ସାରିବା ପରେ ଉଭୟେ ନମସ୍କାର କଲେ । ଶଙ୍ଖ ବାଜିଲା । ସେବକ ଆଳତିର ଆୟୋଜନ କଲେ । ହଟ ନାଗରଙ୍କର ପ୍ରବେଶ ।)

ହଟ - କିରେ ରମା — ନଟବର । ଏ କି ବେଶରେ ?

ଭଦ୍ରବ୍ୟକ୍ତି - ଗୋଟେ ଶୁଭକର୍ମ ଅନୁଷ୍ଠାନ ହେଇଗଲା ଆଜ୍ଞା !

ନଟ - ଆମେ ଦୁହେଁ ସମୁଧି ହେଲୁ ହଟ ନନା ।

ହଟ - (ଆଶ୍ଚର୍ଯ୍ୟରେ) କିମିତିରେ ?

ନଟ - ଏଇ, ତାଙ୍କ ଭଣଜାକୁ ମୋ ଭାଣିଜି....

ହଟ - (ତାଚ୍ଛଲ୍ୟରେ) ହୁଃ....ମାମୁଁଙ୍କ ଉପରୁ ମାଳ ଛିଟିକି ଆସି ତା' ହେଲେ ଭଣଜାଙ୍କ ଉପରେ ପଡ଼ିଲା....ନା...?(ଫେରିଗଲେ, ସବୁ ହସିଲେ । ପଶି ଆସିଲା ଜଗବନ୍ଧୁ ।) ଓଃ କି ପାପ —

ଛଗ - ବଡ଼ମାମୁଁ, ପୁଝାରୀ ନନା, ସଭିଏଁ ଆସ ଦେଖିବ କମିତି ସାନ ମାମୁଁ ପାଗ ପଡିନି ଭିଡ଼ି ସୁଆରୀରେ ଆସି ପହଞ୍ଚିଲାଣି । ମଉଜା ଯାକର ଲୋକ ତା' ପଛେ ପଛେ ଗୋ[illegible]ଇଛନ୍ତି ।

ସମସ୍ତେ - ସତେ ! (ସୁଆରୀ ଡାକ [illegible]ଲା । ତା'ପରେ ପଶି ଆସିଲେ ବଂଶୀ ବଲ୍ଲଭ [illegible]ରେ । ମୁଣ୍ଡରେ ପଗଡ଼ି, କର୍ଣ୍ଣରେ କୁଣ୍ଡଳ । ତା ପଛକୁ ଖୁଣ୍ଡିଆ)

ବଂଶୀ - (ହଟନାଗରଙ୍କୁ ନମସ୍କାର କରି ରମାଙ୍କୁ ନମସ୍କାର କରିବା ସମୟରେ ସେ ଟୋକି ଧରିଲେ ।)

ରମା - (ବାଷ୍ପ ଗଦଗଦ କଣ୍ଠରେ) ବଇଁଶୀ...ପାଜିଟା..ଏତିକି ସୌଭାଗ୍ୟ ପୁମି ତୋ'ର ଥିଲାରେ ?

ଖୁଣ୍ଡିଆ - ଏ ମହାଶୟ, ଏ ଯୁଗର ପାରସୀ ଭାଷାରେ ସର୍ବପ୍ରଥମ ତମାସା ଲେଖକ — ତା ଛଡ଼ା ମୋଗଲ ସମ୍ରାଜ୍ୟର ଦୋଷତ୍ରୁଟି ଦେଖାଇ ରାଜ୍ୟରେ ଶୃଙ୍ଖଳା ଫେରାଇ ଆଣିବାରେ ସାହାଯ୍ୟ କରିଥିବାରୁ — ସମ୍ରାଟ ଦିଲ୍ଲୀଶ୍ୱରେବା ଜଗଦୀଶ୍ୱରେବା ତାଙ୍କୁ ମହାସମ୍ମାନରେ ଭୂଷିତ କରିଛନ୍ତି ।....

(ସେବକ ମାଳା ଦୁଇଟି ଆଣି ଗୋଟିଏ ବଂଶୀ ବେକରେ ଏବଂ ଗୋଟିଏ ଖୁଣ୍ଡିଆ ବେକରେ ପିନ୍ଧାଇ ଦେଲେ । ଖୁଣ୍ଡିଆ ପ୍ରଣାମ କଲେ ।)

ସମସ୍ତେ - ଦିଲ୍ଲୀଶ୍ୱରେବା ଜଗଦୀଶ୍ୱରେବା ମହାମହିମ ସମ୍ରାଟ୍‌ଙ୍କର ଜୟ — (ତିନିଥର)

(ସେବକ ଆଳତୀ ଆରମ୍ଭ କଲା । ସମସ୍ତେ ପୂର୍ବର ସେଇ



''ଭଜରେ ପଶୁପତି ପ୍ରସନ୍ନେ ବିରଜେ'' ସ୍ତବଟିକୁ ଗାଇଲେ । ତା'ପରେ)

ସମସ୍ତେ - ହର ହର ହଟନାଗରଙ୍କ ଜୟ ! ..... (ତିନିଥର)

ଖୁଣ୍ଡିଆ - ମହାମାନ୍ୟ କବିବଲ୍ଲଭଙ୍କର ଜୟ ! .....(ତିନିଥର)

ସମସ୍ତେ - ମହାମାନ୍ୟ କବି ବଲ୍ଲଭଙ୍କର ଜୟ ! ..... (ତିନିଥର)

(ପୁଣି ଆରତୀ ଓ ହଟନାଗରଙ୍କର ସ୍ତୁତି ଗାନ)

- ଶେଷ ଯବନିକା -

ଆରମ୍ଭ: ଫେବୃଆରୀ, ୧୯୬୦
ଶେଷ: ମାର୍ଚ୍ଚ, ୧୯୬୦।